# ଷସୃସରଂ

ଶ୍ରୀ ଦ୍ୱାରକାନାଥ ଦାସ

କୁହେଳିକା ଗ୍ରନ୍ଥମାଳା (ପ୍ରଥମ ଅବଦାନ)

# ଗୁପ୍ତ ଘର

(ଡିଟେକ୍‌ଟିଭ୍ ଉପନ୍ୟାସ)

( ୨ୟ ସଂସ୍କରଣ )



ଲେଖକ—ଶ୍ରୀ ଦ୍ୱାରକାନାଥ ଦାଶ



ପ୍ରକାଶକ—ଶ୍ରୀ ଜୟକୃଷ୍ଣ ମିଶ୍ର
ଅଧ୍ୟାପକ ରେ. କଲେଜ
କଟକ

ପ୍ରୋପ୍ରାଇଟର ଇନ୍ଦ୍ରମଣି ଦାସ



ମୂଲ୍ୟ ଏକଟଙ୍କା ଦୁଇଅଣା

ବୋଉ,

ମୋର ଲେଖା ପଢ଼ିବାକୁ ତୋର ବଡ଼ ଆଗ୍ରହ । ତେଣୁ ତୋର କର କମଳରେ ଏ କ୍ଷୁଦ୍ର ବହି ଖଣ୍ଡି ମୁଁ ଅର୍ପଣ କଲି ।

ତୋର
'ପୁଅ'

ଜୀବନ ଯୋଟିଏ କଲେଜ ପିଲା, କଲେଜରେ ପଢୁଥିବା ବେଳେ
ପିତା ମାତାଙ୍କ ମୃତ୍ୟୁ ଖବର ଏବଂ ସ୍ନେହର ଭଉଣୀକି
ଅନ୍ତର୍ଦ୍ଧାନ କଥା ଶୁଣି ପ୍ରତିଜ୍ଞା କଲା ଭଉଣୀଟିକୁ
ଉଦ୍ଧାର କରିବ ବୋଲି । ପ୍ରକୃତ ଦସ୍ୟୁ
କିଏ ? ଦସ୍ୟୁର ଗୁପ୍ତଘର ଧରା ପଡ଼ିଲା
କି ନାହିଁ ? ଜୀବନ ଭଉଣୀଟିକୁ
ଉଦ୍ଧାର କରି ପାରିଲା କି
ନାହିଁ ? ପୁସ୍ତକଟି ପଢିଲେ
ଅନ୍ତରେ ନିଶ୍ଚୟ
ଜାଣିବେ ।

ଲେଖକ

# ଅଭିମତ

ଶ୍ରୀମାନ୍ ଦ୍ୱାରକାନାଥଙ୍କର 'ଗୁପ୍ତଘର'ର ପାଣ୍ଡୁଲିପିଟି ପଢି ବଡ଼ ଆନନ୍ଦିତ ହେଲି । ବାଣୀମନ୍ଦିରରେ ପ୍ରାରମ୍ଭିକ ପୂଜା କରିବାକୁ ଯାଇଛି ସେ ଏବଂ ଧୂପ, ଦୀପ, ଅର୍ଘ୍ୟ ନୈବେଦ୍ୟ ସମର୍ପଣରେ ତାର ନହଜରି ପ୍ରାଥମିକ ଅନୁଭୂତି । କିନ୍ତୁ ସୁଖର କଥା, ତାର ସମ୍ଭାର ଧରେଇ ଦେଇଛି ,ତାକୁ ବାସ୍ତବ ପୂଜାର ଯଥୋଚିତ ଧାରା ଏବଂ ଯେଉଁ ବାଟରେ ସେ ଆଗେଇବାକୁ ବସିଛି ତାହା ଯେ କେବଳ ତାକୁ ଯଥାର୍ଥ ଲକ୍ଷ୍ୟରେ ପହଞ୍ଚେଇ ଦେବ ସେତିକି ନୁହେଁ, ସେ ଏକ ଅଭିନବ ପଥପ୍ରଦର୍ଶକ ଭାବରେ ଅନ୍ୟର କେତେ ପୂଜକଙ୍କୁ ବାଣୀମନ୍ଦିରକୁ ପଡ଼ିଥିବା ସେଇ ଉଜ୍ଜ୍ୱଳ ବାଟରେ ବାଟେଇ ଦେବ ସମ୍ପୂର୍ଣ୍ଣ ଏକ ନୂତନ ପ୍ରାଣ ଓ ପ୍ରେରଣାରେ । ମନେ ଥିଲ ଥିଲ ଈଶ୍ୱର, ଜଳନ୍ତି ଭାରତୀ ହୃଦୟର ଅବ୍ୟକ୍ତ ଆବେଗରେ ହାତ ବଢେଇ ଦେଉଛନ୍ତି ତା ହୃଦୟର ସେଇ ମହନୀୟ ପୂଜା ସମ୍ଭାର ଗ୍ରହଣ କରିବା ଲାଗି—ତାର ଉତ୍ସୁକ ପ୍ରାଣକୁ ଉଚ୍ଛ୍ୱାସର ଆନନ୍ଦରେ ମୁଗ୍ଧ ହୋଇ ଅଭୟ ପ୍ରଦାନ କରିବାଲାଗି ।

ତେବେ ଆମେ ସବୁ ଦେଖିବାକୁ ସେଇ ପୂଜା ସମ୍ଭାରରେ ଅଛି ସବୁ କଣ ?—ବଡ଼ ଗହନ କଥା ସେ,—ସାମଗ୍ରୀ ଗୁଡ଼ିକ ଖୋଲିଦେବୁ ଆସ ନାହିଁ, ଗୁପ୍ତଘରର କେଉଁ ଅଦ୍ଭୁତ କୋଠରୀରୁ ଶୁଣାଯାଉଛି ସେଗୁଡ଼ିକ ବଡ଼ ଯତ୍ନରେ । ଆଖି ତ ସମସ୍ତଙ୍କର ଅଛେ ନା ଅନେକ ପଡ଼ିବ, ମାତ୍ର ପୂଜକ ହାତ ବଢେଇ ଦେଉଛି

ଆଲୋ ଉପରେ ଘୋଡାଏ ବଡ଼ ଆଙ୍କୁଶି ବଡ଼ ଗୁଲ'ବରେ । ତା ପ୍ରାଣର ଏକାନ୍ତ ପୂଜା ଅବକାଶରେ ବହୁତ ଫାଙ୍କରେ ଧୀର ଭାବରେ ଝିଙ୍କିଏ ଦେଖ, ଅନ୍ତରର ଉଜ୍ଜ୍ୱଳ ଶିଖାରେ ଦେଖିବାକୁ ପାଇବ 'ଜୀବନ' ଉଦ୍ୟାନର କାନ୍ତ କୋମଳ କୁସୁମଗୁଡ଼ିକ ଯାହାର ମଧୁମୟ ସୌରଭ ତୁମକୁ ବିଭୋଳ କରିଦେବ ଅପୂର୍ବ ଭାବରେ । ପୁଣି ଦେଖିବ ସେହି ପୁଷ୍ପଗୁଚ୍ଛର ଯଥାର୍ଥ ବ୍ୟବହାରୀ ଓ ଗ୍ରାହକ ବାଣୀ ଦେବୀଙ୍କର ଶୁଭ୍ରଶିଶୁ ମୂର୍ତ୍ତିମନ୍ତ ହୋଇ ଚଲ ପଡ଼ୁଛି ଏବଂ ନିତ୍ୟ 'ନବ' ଆନନ୍ଦର ଅଭିନବ ଆବେଗ ନେଇ ପୁଷ୍ପ ସୌରଭ ଭଳରେ ଭକ୍ତ ଉଦ୍ଭୁତ ବାଣୀ ଦେବୀଙ୍କୁ ମୁଗ୍ଧ କରେ । ନୈବେଦ୍ୟ ଗୁଡ଼ିଏ ସ୍ୱର୍ଗୀୟ ଭାବରେ ଭରପୂର ହୋଇ ସତେ ଯେପରି ବାଣୀ ଦେବୀଙ୍କ ଶତବୃତ୍ତି କି ଅଶା ପଦ୍ମାକିନୀରେ ଉପାସ ଦେଉଛି । ସେତିକି ନୁହେଁ, ସଂସାରର ନୀରସ ଜଞ୍ଜାଳ ଗୁଡ଼ାକ ସେଇ ସ୍ୱର୍ଗୀୟ ଅଭାବରେ ଉଜ୍ଜ୍ୱଳ ହୋଇ ଉଠୁଛି ଏବଂ ଉଦ୍ୟାନର ବର୍ଣ୍ଣାଢ୍ୟ କୀଟ ଗୁଡ଼ାକ ନବଜୀବନ ପୁଷ୍ପକୁ ଭୂଷିତ କରିବା ଲାଗି ଯୋଡ଼ାଏ ଚନ୍ଦ୍ର ଘୋଡ଼େ ଗୋଡେ । କିନ୍ତୁ କୁହେଳିକାମୟୀ ବର୍ଷିତା, ବୁଲନ୍ତ ବାତାବରଣ, ଏପରିକି କୀଟସବୁ ପ୍ରହେଳିକା ପରି ସେଇ ଅଦ୍ଭୁ-ନବ ଜୀବନ ସୌରଭ ଭିତରେ କୁଆଡ଼େ ମଳେଇ ଯାଉଛନ୍ତି ଚଞ୍ଚଳ ଭାବରେ । ଏ ହେଲା ପୂଜୋପକରଣ ଏବଂ ଏହା ଭିତରେ ରହି ଉହିତ ମୂଳରେ ଅବେଗମୟ ପ୍ରାଣ । କିନ୍ତୁ ତାକୁ କି ପଚାର ପୂଜାପାଳିକି ପୂଜ ନେବ ପ୍ରସନ୍ନେ ରଖିବ ବା କେତେ ଦିନ ? — ବିଶେଷତଃ ବିଶ୍ୱପ୍ରାଣର ବିତାଣ ଲାଗି ଶରଦନ ଜନ୍ମୁକ୍ତ ଯେଉ ବାଣୀ ମଣ୍ଡପରେ ? ଭଲି ଭଲି ନୈବେଦ୍ୟ ଅସ୍ତୁ, ଫୁଲ ଅସ୍ତୁ, ଧୂପ-ଦୀପ ଅସ୍ତୁ, ବାଣୀଦେବୀର ପୂଜୋପକରଣ ଓ ପ୍ରସାଦରେ ପରେ

— ୧ —

କଲେଜ ଛୁଟି । ଅନ୍ଧାର ରାତ । ଜୀବନ ବସିଛି ତାର ରୁମଟିରେ, ଏକୁଟିଆ, ମନେ ମନେ ଭାବୁଛି, "କାହିଁକି ଅଙ୍କ ତାକୁ ଭଲ ଲାଗୁନାହିଁ ? ପାଠ ପଢ଼ିବାକୁ ଇଚ୍ଛା ହେଉନାହିଁ କାହିଁକି ? କେବଳ ମନେ ପଡୁଅଛି ଘରକଥା, ଗୋପଣ୍ଡା କଥା, ବାପା, ମା ଏବଂ ସ୍ନେହର ଏକମାତ୍ର ଭଉଣୀ ରେଖାର କଥା । କଣ କରୁଥିବ ସେ ! ଜୀବନକୁ ଥରେ ନ ଦେଖିଲେ ତାର ମନ ଅସ୍ଥିର ହୋଇ ଉଠେ । ଏକା ଥାଳିରେ ଏକସଙ୍ଗରେ ନ ଖାଇଲେ ସେ ଖାଏ ନାହିଁ । ତେବେ ସେ ଆଜିଯାଏ କପର କାଳ କାଟୁଥିବ ? ବାପା ବୋଉ କଣ କରୁଥିବେ ? ଶେଷକୁ ମନେ ପଡ଼ିଲା, ତାର ଅତି ଆଦରର ବନ୍ଧୁ ନବ କଥାଟିରେ । ସେ ଚମକି ଉଠେ । କଣ କହିବ, ନବ କାହିଁକି ବହୁତ ଦିନ ହେଲା ଏଠାକୁ ଆସୁନାହିଁ ? ତାର ଦେହ କଣ ଖରାପ ହୋଇଛି ନା କଣ ? କି ସେ ମୋ ଉପରେ ରାଗ କରିଛି । ଜୀବନ ଭାବୁଛି ଆକାଶ ପାତାଳ, ଏସବୁ କଣ ? ଆଜି ତାର ଏତେ ଦୁର୍ବଳତା କାହିଁକି ? ଅଜ ଘର କଥା କାହିଁକି ଏତେ ମନେ ପଡୁଛି ! ଘରର କିଛି ଖରାପ ହୋଇ ନାହିଁ ତ ! ତାର ବନ୍ଧୁ ନବକୁମାର ଏବଂ ତାର ଅତି ଆଦରର ଭଉଣୀ ରେଖାର

କିଛି ଅନିଷ୍ଟ ହୋଇ ନାହିଁ ତ ।" କାହିଁକି ହଠାତ୍, ତାହାର ମନେ ପଡ଼ିଗଲା ଗାଁ ଜମିଦାର ରଘୁ ଚଉଧୁରୀଙ୍କ କଥା । ସେ ଭାବିବାକୁ ଲାଗିଲା, ମୋର ବାପା ମା ତାଙ୍କୁ ଚିହ୍ନାଇଲେ । ସେ ବାପ ମାଙ୍କର କିଛି ଅନିଷ୍ଟ କରି ନାହିଁ ତ ? ତାର ସ୍ନେହର ଭଉଣୀ ଉପରେ ସେ କେତେଦିନୁ ଆଖି ରଖିଥିଲା, ତାର କିଛି ଅନିଷ୍ଟ କରି ନାହିଁ ତ ? ତା ମନ ଚଞ୍ଚଳ ହୋଇ ଉଠିଲା । ତାକୁ ଜଣାଗଲା ସତେ ଯେପରି ଜମିଦାର ରଘୁ ଚଉଧୁରୀ ତାର ବାପ, ମାଙ୍କୁ ମାରି ସ୍ନେହର ଭଉଣୀ ରେଖାକୁ ଅପହରଣ କରିଛି । ସେ ସହି ପାରିଲା ନାହିଁ, ହଠାତ୍ ଚେୟାରରୁ ଉଠି ପଡ଼ି ଡାକିଲା "ନରହରି, ନରହରି ।"

ତା'ର ଚିତ୍କାର ଧ୍ୱନି ପୁରୁଣା ଗୃହର ଭିତରେ ଖେଳାଇ କରୁଥିଲା । ବାବୁଙ୍କ ଡାକଶୁଣି ଉଠିଆସି କହିଲା, "କାହିଁକି ଡାକୁଥିଲ ବାବୁ ?"

ଜୀବନ ବୁଝି କହିଲା, "କିଏ ନରହରି" ।

ନରହରି ବାବୁଙ୍କର ଏପରି ଅବସ୍ଥା ଦେଖି ପଚାରିଲା, "କଣ କିଛି ଦେହ ଖରାପ ହୋଇଛି କି ? ଏପରି ବ୍ୟସ୍ତ ହେଉଛନ୍ତି କାହିଁକି ?"

"ନା, ମୋର କିଛି ହୋଇନାହିଁ, ରୋଷେଇ ଘରଗଲାଣି ?"

ହଁ, ବାବୁ ଆଉ ଅଳ୍ପ ଅଛି ।

ଏହି ସମୟରେ ବାହାରେ କିଏ ଡାକିଲା, "ଦେଖିବ, ଦେଖିବ ଜୀବନ ବାବୁ ଘରେ ଅଛନ୍ତି ?"

ଜୀବନ କହିଲା, "ଦେଖିଲୁ ନରହରି ବାହାରେ କିଏ ଡାକୁଛି ?"

ନରହରି ଚାଲିଲା ଦରଜା କବାଟ ଖୋଲିବାକୁ । ଜୀବନ ଅଜ୍ଞା-ତରେ ଚଉକି ଉପରେ ବସି ପଡ଼ିଲା । ମନେ ମନେ କହୁଥିଲା,

"ଏ ତ ନବ ପାଟିପର ଶୁଭୁଛି, ନବ କଣ ଆସିଛନ୍ତି ! ସେ ବା ଏତେ ରାତିରେ ଅଧନରେ କାହିଁକି ? କଣ ଘର ଖବର ନେଇ ଆସିଛନ୍ତି ? କଣ ଆଣିଛନ୍ତି ଭଲ ନା ମନ୍ଦ ।"

ଏ ସବୁ ଜାଣିବାକୁ ଉତ୍କଣ୍ଠା ସହକାରେ ବସି ରହିଲେ । ଏହି ସମୟରେ ନରହରି ଏବଂ ନବ ଆସି ପହଞ୍ଚିଲେ ଜୀବନ ପାଖରେ । ଜୀବନ ଯାହା ଭାବିଥିଲା, ସତରେ ସେ ତାହା ଘଟିବ, ତାହା ନିଜ ଆଖିରେ ଦେଖି ସୁଦ୍ଧା ବିଶ୍ୱାସ କରି ପାରିଲା ନାହିଁ । ଉଭୟଙ୍କର ଦୁଇ ହାତରେ ଆଖି ମଳି ଚାହିଁ ଦେଖିଲା ତାର ପ୍ରାଣର ବନ୍ଧୁ ନବ ଅସ୍ପୃଶ୍ୟ ହୋଇ ଚାହିଁ ରହିଛି । ବହୁ ଦିନପରେ ବନ୍ଧୁ ନବକୁ ଦେଖି ଉଭୟଙ୍କୁ ଉଠିଯାଇ ଆନନ୍ଦରେ କୁଣ୍ଢାଇ ପକାଇଲା । ନବ ମଧ୍ୟ । ତାପରେ ଜୀବନ କହିଲା, 'ନରହରି ଗୁହଁରୁ କଅଣ ଯାଅ, ଆମ୍ଭ ଦୁହିଁଙ୍କ ପାଇଁ ଖାଇବାକୁ ଏଠାକୁ ନେଇଆସ ।'

ନରହରି କିଛି ନ କହି ଖାଦ୍ୟ ଆଣିବାକୁ ଭିତରକୁ ଚାଲିଗଲା । ତାପରେ ଜୀବନ ନବକୁ ଗୋଟିଏ ଚଉକିରେ ବସାଇ ଦେଇ ନିଜେ ଗୋଟିଏ ଚଉକିରେ ବସି ପଡ଼ିଲା । ତା ପରେ କହିଲା, "ନବ ମୋତେ ସବୁ ଗୋଟି ଗୋଟି କରି କହୁଥା, ତୁ ଏତେଦିନ କେଉଁଠି ଅଛୁ ନ ଥିଲୁ କହିବୁ ? ବାପା ବୋଉ ମୋର ଭଲ ଅଛନ୍ତି ତ ? ତୁ ଆସିଲା ବେଳକୁ ସେମାନେ କଅଣ କରୁଥିଲେ ? ପେଖା କାହିଁ ଅଛନ୍ତି ? ସେ କଅଣ କରୁଥିଲା ? କର୍ମଦାର ସେମାନଙ୍କ ଉପରେ ଅତ୍ୟାଚାର କରୁ ନାହିଁ ତ ? ଗାଁ ଖବର କଅଣ ? ଆଉ ତୁ କିପରି ଚଳୁଛୁଁ ?"

ଏହା କହିବାପରେ ଜୀବନ ସବୁର କଲା, ନବ ଚୁପ୍, ନାହାକି ତାର ପଚାରିବାର କଥା । ଶେଷକୁ ଜୀବନ ଚୁପ୍ ହୋଇ ବସି

ରହିଲା । ଦେଖିଲା ନବ ଆଖିରେ ଆଖିଏ ଲୁହ । ସେ ଆଶ୍ଚର୍ଯ୍ୟ ହୋଇ ପଚାରିଲା, "ଏ କଅଣ ନବ, ତୋ ଆଖିରେ ଲୁହ କାହିଁକି ? କଥା କଅଣ, କିଛି ଅସୁବିଧ ହେଲା ? ମୁଁ ଏତେ ପ୍ରଶ୍ନ ପଚାରିଲି ବୋଲି ତୋ ମନରେ ଦୁଃଖ ହେଲା ?" ଏହା କହି ନିଜ ଚୌକିରୁ ଉଠିଯାଇ ରୁମାଲରେ ମୁହଁ ପୋଛି ଦେଇ କହିଲା, "ଓ ବୁଝିଲି ଖେଳ ହେଲାଣି ନା ? ସେଥିପାଇଁ କିଛି କହି ପାରୁନାହୁଁ । ହଁ ହଜାର କଥା, ବହୁତ ବାଟରୁ ଆସିଲଣି । ମତେ କ୍ଷମା ଦେ ।" ତାପରେ ଜୀବନ ଉପରୁ ତାକୁ ଖୁଣ୍ଟିଲା, "ଆରେ ନରହରି" ।

'ନରହରି, ହଁ ବାବୁ କହ ପେଟରେ କାମରେ ମନ ଦେଲା ।'

ନବ ଡାକିଲା, "ଜୀବନ" !

ଜୀବନ ଚୌକିରେ ବସୁ ବସୁ କହିଲା, 'କଣ' ?

ନବ କହିଲା, "ତୋ ପ୍ରଶ୍ନର ଉତ୍ତର ଶୁଣିବୁ ?"

ଜୀବନ ଚଞ୍ଚଳତାକୁ ନବ ପାଖକୁ ଟାଣି ଆଣି କହିଲା, "ଏବେ ମୁଁ ତ ସବୁକିଛି ଶୁଣିବା ପାଇଁ ଚାହୁଁଛି ?" ନବ ଆରମ୍ଭ କଲା :—

ଜମିଦାର କଅଣ ଲୋକ ତା ତ ତୁ ଜାଣୁ । ସେ ତୋ ବାପ ମାଙ୍କୁ ସମସ୍ତ ଲୋଭ ଦୃଷ୍ଟିରେ ଦେଖେ, କାରଣ ସେ ତାଙ୍କ ପଥ ଅନୁସାରେ ଚାଲନ୍ତି ନାହିଁ । ଯେବେ ସେ ଲେଖାକୁ ମାଗିଲେ, ତାହା ମନା କଲେ । ସେହି ଦିନ ସନ୍ଧ୍ୟାରେ ତୋ ପିତାଙ୍କର ମୃତ୍ୟୁ ହେଲା । ପିତାଙ୍କୁ ହରାଇ ଦୁଃଖ ମା ତୋର ମରିଗଲେ ଏବଂ ମୋ ହାତରେ ସମର୍ପିଦେଲେ ଅଦରର ଲେଖା ରେଖାକୁ । ଦୁଇଦିନ ଯାଏ କିଛିଦିନ ସୁଯୋଗ ହେଲା । ଶେଷକୁ ସେ ମଧ୍ୟ ପିଶାଚ ଜମିଦାରର ହସ୍ତଗତ ହେଲା । ମୁଁ ତାକୁ ବହୁତ ଖୋଜିଲି, ଘର, ଦୁଆର, ବାଡ଼ ବଗିଚା, ଖୋଜାଖୋଜି କଲି । କିନ୍ତୁ କୌଣସିଠାରେ ତାକୁ ପାଇଲି ନାହିଁ । ଧୀରେ ସମୟ, କନେଷ୍ଟବଲ୍ ଇତ୍ୟାଦି ଆସିଲେ, ସେମାନେ ମଧ୍ୟ ବହୁତ

ଖୋଜିଲେ, କିନ୍ତୁ ରେଖାର ପତ୍ତା ମିଳିଲା ନାହିଁ । ବହୁତ ଲୋକଙ୍କୁ ବହୁତ ପ୍ରଶ୍ନ ପଚାରି ଗଲି, କିନ୍ତୁ ଟିକେ ସଠିକ ଖବର ମିଳିଲା ନାହିଁ । ନିରାଶ ହୃଦୟରେ ମୁଁ ଫେରି ଆସିଲି । ମୋର ଭଗ୍ନ କୁଡ଼ିଆକୁ । ମୋ ଆଖି ଆଗରେ ରେଖାର ଛବିଟା ନାଚି ଉଠିଲା । ମୁଁ ପ୍ରତିଜ୍ଞା କଲି, ଯେ କୌଣସି ପ୍ରକାରେ ହେଉ ରେଖାକୁ ଉଦ୍ଧାର କରିବି । ଏଣୁ ତୋ ପାଖକୁ ଧାଇଁ ଆସିଛି ।" ସବୁ କଥା ସାରିଲା ପରେ ସେ ବଡ଼ ଅସ୍ଥିର ହୋଇ ପଡ଼ିଲା ଏବଂ ଦେଖିଲି ଜୀବନ ବେହୋସ ହୋଇ ଯାଉଛି ଓ ନରହରି ଖାଇବାର ଜିନିଷ ଧରି ଠିଆ ହୋଇଛି । ନଇଁ ଉଠିଯାଇ ଜୀବନକୁ ଟେକିନେଇ ପଲଙ୍କ ଉପରେ ଶୁଆଇ ଦେଇ ନରହରିକୁ ପାଣି ଆଣିବାକୁ କହିଲି । ନରହରି ପାଣି ଆଣି ଦେଲା ।

ଘଣ୍ଟାକ ପରେ ଜୀବନ ଚେତା ପାଇ ଉଠି ବସିଲା । ତାକୁ ବଡ଼ ଖରାପ ଲାଗୁଥାଏ । କିନ୍ତୁ ମୋର ବହୁତ ବୁଝାଇବା ପରେ ଦୁହେଁ ଖାଇ ବସିଲେ । ଖିଆ ସରିଲା ! ନରହରି ବାସନ ନେଇ ତଳକୁ ଖାଇବାକୁ ଚାଲିଗଲା ।

ଦୁଇବନ୍ଧୁ ଖଟ ଉପରେ ବସି କଅଣ କରିବେ ଭାବିବାକୁ ଲାଗିଲେ । ଅନେକ ଚେଷ୍ଟା ପ୍ରକାର କହିଲି, କିନ୍ତୁ ସେଥିରେ ତାହାର ମନ ମାନିଲା ନାହିଁ । ଶେଷକୁ ଜୀବନ କହିଲା, "ନବ କାଲି ସକାଳୁ ମୁଁ ଗାଁକୁ ଯାଉଛି । ସେଠାରୁ ସବୁ ବୁଝି ଗୋଟିଏ ଦିନ ମଧ୍ୟରେ ଫେରି ଆସିବି । ତୁ ଏଇଠି ଥା । ମୁଁ ନ ଆସିବା ଯାଏ କୁଆଡ଼େ ଯିବୁ ନାହିଁ ।"

ନବ କହିଲା, "ମୁଁ ଏଠାରେ ଥାଇ କଣ କରିବି ? ମତେ ତୋ ସଙ୍ଗରେ ନେ ।"

ଜୀବନ କହିଲେ, "ତୁ ସେ ବଦ୍‌ମାସର ଖୋଜ ଖବର ନେବୁ । ମୁଁ ଭଲକରି ଜାଣିପାରୁଛି ଯେ, ଏ ସବୁ ସେ ଜମିଦାରର କାମ । ସେ କେବେ ରେଖାକୁ ସେଠାରେ ରଖିନାହିଁ । ନିଶ୍ଚୟ ଏତେଣେ ପଠାଇ ଦେଇଛି । ତୁ ଏଠାରେ ଥାଇ ସବୁ ବୁଝ୍ ଥା । ମୁଁ ଦେ ଟାଏ ଦିନ ମଧ୍ୟରେ ଫେରି ଆସିବି । ଏ କଣ ଗୋଟାଏ କାମ ନୁହେଁ ?"

ନବ ମାନିଲା । ତା ପରେ ଦୁହେଁ ଶୋଇବାକୁ ଗଲେ ।

— ୨ —

ନ' ପରଦିନ ସକାଳୁ ନବ ଉଠି ଜୀବନକୁ ଉଠାଇ ଦେଲା । ଜୀବନ ଶୀଘ୍ର ଉଠି ନିତ୍ୟକର୍ମ ସାରି ଜଳଖିଆ ପ୍ରସ୍ତୁତ କରି ମୋଟର ଗାଡ଼ିରେ ଗାଁକୁ ବାହାରିଲା । ମୋଟର ଦ୍ରୁତଗତିରେ ଚାଲିଲା ବହୁତ ଲୋକଙ୍କୁ ନେଇ । ସେଥିରେ ଜୀବନ ବସିଛି ଦେଉଛି ନିଜର ବାଦ୍ୟଜ୍ଞାନ ।

ସେ ଭାବି ଭାବୁଛି, "ଗାଁକୁ ଯାଇ ପ୍ରଥମେ କଅଣ କରିବ ? ଜମିଦାରଙ୍କୁ କଣ ପଚାରିବ ? ଏ ସବୁର ଠିକ ଉତ୍ତର କିଏ ଦେବ । ତାଙ୍କୁ ବା ପଚାରିବ ! ଯା ଲୋକେ ପଚାରିଲେ ସେ ବା କଣ ଉତ୍ତର ଦେବ ? ରେଖାକୁ ପାଇବ କେଉଁଠି ? ବଦମାସ୍, ଧର୍ମ ଲେଖ ଦେଖାଇ ପୁଣି ଏତେ ଅତ୍ୟାଚାର କରନ୍ତି । ସଇତାନ୍ ତେବେ ମୁଁ ଉପଯୁକ୍ତ ଶିକ୍ଷା ନ ଦେଇ ଛାଡ଼ୁନାହିଁ । ରଦ୍ଦିବାବୁ, ରଦ୍ଦିବାବୁ ଅଜ ରକ୍ଷା ନାହିଁ, ଆଉ ଅଧଘଣ୍ଟାଏ, ତାପରେ ତୁମ୍ଭର ମୋର ସାକ୍ଷାତ । ତାପରେ ତୁମ ଅନ୍ତ, ତୁମର ମୃତ୍ୟୁ, ରେଖାର ଉଦ୍ଧାର । ବିଜୟୋଲ୍ଲାସରେ ମୋର ପ୍ରସ୍ଥାନ ହେବ । ହାଃ, ହାଃ, ହାଃ, ।"

ଜୀବନ ଅସ୍ଥିର ହୋଇ ଉଠିଲା, ଆଉ ଦଶ ମିନିଟ ବାକି ଅଛି । ସେ ବ୍ୟସ୍ତ ହୋଇ ଉଠିଲା । ବାହାରକୁ ଚାହିଁ ଦେଖିଲା,

ଦୂର ପାଖରେ ସବୁଜ ଧାନକ୍ଷେତ ଶୋଭାମାନ । ତାର ମଝିରେ ନାଲି ସଡ଼କଟି କାହିଁ କେତେଦୂର ଲମ୍ବି ଯାଇଛି । ତାହା ଉପରେ ଜୀର୍ଣ୍ଣ ଶୀର୍ଣ୍ଣ ମଟର ଖଣ୍ଡେ ଧୂଳି ଉଡ଼ାଇ ଗତି କରୁଛି । ପ୍ରାଣ ଭରି ଡାକ ଦେଇ । ଦୂର ପାଖରେ କୃଷକ ଶ୍ରାବଣର ଧାରା ତରଷା ସହ ଧାନ-କ୍ଷେତରେ ନିଜର ଅମୂଲ୍ୟ ଜୀବନଟିକୁ ଲୋଟାଇ ଦେଇଛନ୍ତି ଏବଂ ପ୍ରାଣଖୋଲା ଗୀତ ଗାଇ ଦେଶବାସୀଙ୍କ ମନରେ ନୂତନ ଦିନର ନୂତନ ଜାଗରଣ ଜନ୍ମାଉଛନ୍ତି । ଏ ସବୁ ପ୍ରାକୃତିକ ସୌନ୍ଦର୍ଯ୍ୟ ଦେଖି ଦେଖି ଜୀବନ କିଛି ସମୟ ପାଇଁ ସବୁ ଦୁଃଖ ଭୁଲିଗଲା । ହଠାତ୍ ଗାଡ଼ି ବନ୍ଦ ହୋଇଗଲା । ନରହରିବାବୁଙ୍କର ଉଠିବାର ଡ୍ରାଇଭର ଡାକ ଛାଡ଼ିଲା । ଡ୍ରାଇଭରର ଡାକରେ ଜୀବନର ଭାବନା ସ୍ରୋତ ଭାଙ୍ଗିଗଲା । ଜୀବନ ଯିବାକୁ ଉଠିଲା ଏବଂ ଧୀରେ ଧୀରେ ଚମଡ଼ା ସୁଟକେଶ ଧରି ଓହ୍ଲାଇ ପଡ଼ିଲା, ଗାଡ଼ି ଛାଡ଼ିଦେଲା ।

ବର୍ତ୍ତମାନ ଜୀବନ କରିବ କଅଣ ? ସେ। ଉତରକୁ ଯିବ କିପରି ? ତାହାକୁ ବା କିଏ ପଚାରିବ, କିଏ ତାର ସବୁ ପ୍ରଶ୍ନର ଉତ୍ତର ଦେବ ? ଏହା ଭାବି ଭାବି ଜୀବନ ଚାଲିଲା ଗ୍ରାମ ଭିତରକୁ । ଗ୍ରାମଟି ଯଦିଓ ସହରଠାରୁ ଦୂରରେ ତଥାପି ଗ୍ରାମବାସୀମାନେ ଶିକ୍ଷିତ ଓ ସଭ୍ୟ । ସମସ୍ତେ କିଛି ନା କିଛି ବ୍ୟବସାୟ କରି ଜୀବନ ପୋଷଣ କରନ୍ତି । ଅଧିକାଂଶ ଧନୀ, ଦୁଃଖ କଣ ଗ୍ରାମବାସୀମାନେ ଜାଣନ୍ତି ନାହିଁ । ଆନନ୍ଦରେ ଦିନ କାଟୁଛନ୍ତି । ହଠାତ୍ ଜୀବନର ନଜର ପଡ଼ିଲା ତାର ଘର ଉପରେ । ଘରର ଶୋଭା ବର୍ଣ୍ଣି ନହେଁ । ତା ପରିବର୍ତ୍ତେ ବଗିଚା, ନାନା ଜାତିର ଫଳ ଫୁଲ ଭରା । ମାଳୀମାନେ ଗଛରେ ପାଣି ଦେଉଅଛନ୍ତି । ଜୀବନ ଉତ୍ସୁକ ହୋଇ ଉଠିଲା । ବାହାରେ ବାଲି ବାହାରିଲା, କିନ୍ତୁ ଫାଟକ ପାଖରେ ପହଞ୍ଚିବା ମାତ୍ରେ

ତାର ପ୍ରକୋପ କମିଗଲା । ସେ ଧୀର ସ୍ୱରରେ ଡାକିଲ, "ଜଗୁଆ ଜଗୁଆ ।"

ଜଗୁଆ ପାଣି ଦେଉଥିଲା । ଜୀବନଙ୍କୁ ଦେଖି "ଆସ ଜୀବନବାବୁ ଆସିଲେଣି, ଧାଇଁ ଆସ" ବୋଲି କହି ଦଉଡ଼ି ଆସିଲା । ଜୀବନର ଗୋଡ଼ ତଳେ ସମସ୍ତେ ଲମ୍ବ ହୋଇ ପଡ଼ିଗଲେ ।

ତାପରେ ଜୀବନ କହିଲା, "ଜଗୁଆ ତୋ ସଙ୍ଗରେ କଥା ଅଛି ।"

ସେ କହିଲା, "ଭିତିରି ଘରକୁ ଆସନ୍ତୁ ।"

ଜଗୁଆ ଏବଂ ଜୀବନ ଭିତିରି ଘରକୁ ପଶିଲେ, ଅନ୍ୟମାନେ ଯେ ଯାହା କର୍ମରେ ଲାଗିଗଲେ । ଭିତିରି ଘରେ ଜଗୁଆ, ଜୀବନଙ୍କୁ ଖଣ୍ଡିଏ ଚଉକି ଦେଇ ବସିବାକୁ ଅନୁରୋଧ କଲା । ଜୀବନ ତାହା ପଥା ରକ୍ଷା କରିବାକୁ ଯାଇ ଚଉକିଟିରେ ବସିଲା ଏବଂ ଜଗୁଆ ତଳେ ବସି ପଚାରିଲା, "କି କଥା" ?

ଜୀବନ ପଚାରିଲା, "ଜଗୁଆ ମୁଁ ଯାହା ପଚାରିବି ଠିକ୍ ତାର ଉତ୍ତର ଦେବୁ । ନୋହିଲେ ତୋର ଦଶା ଯାହା ହେବ ତାହା ତୁ ଜୀବନରେ ଭୁଲିବୁ ନାହିଁ ।"

ଜଗୁଆ କହିଲା, "ଆପଣଙ୍କ କଥା ଅମାନ୍ୟ କରିବ ? ଏ ଜୀବନରେ କରିବ ନାହିଁ । ଆପଣ ତାହା ପୁଅ । ସେ ଶ୍ରୀପତି-ଦାସମ୍ ଗୁପ୍ତ ଭାବରେ କେତେ ବଡ଼ ଲୋକଙ୍କୁ ମାରିଲା । ଆପେ ତ ଅଜ୍ଞା, ତାଙ୍କ ପୁତ୍ର । ଆପଙ୍କୁ ସେ ଯାହା କହିଲା, ସେଥିରେ ଅଛେ ବାଧ୍ୟ । ଆପଙ୍କ ପିତାମାତାଙ୍କର ମୃତ୍ୟୁ ଖବର ଲୁଚାଇ ରଖିଲି କେବଳ ତା ପାଇଁ । ଆପଣଙ୍କ ସ୍ନେହର ଭଉଣୀକୁ କୁଆଡେ ନେଇ ରଖିଲା, ସେଥିରେ ମଧ୍ୟ ରହସ୍ୟ ହୋଇ ରହିଲା । ଶେଷକୁ ଆପଣଙ୍କ ଘର ଖଣ୍ଡିଏ ଜମିରେ ଫେରିଗଲେ । ଆପଙ୍କୁ ସେଥିରେ ଧନରତ୍ନ ଖଞ୍ଜାଇଲେ । ସବୁ ସହିଲି, ଏ ଥର ଆଉ

ସହିପାରୁନୁ ନାହିଁ । ଆମର ଆଖି ଖୋଲିଛି । ଆମ୍ଭେମାନେ ଆପଣଙ୍କୁ ଚାହୁଁଛୁ । ଅନୁମତି ଦିଅ, ଜୀବନବାବୁ, ସମସ୍ତେ ମିଶି ତାର ଘର-ଦ୍ୱାର ଭାଙ୍ଗି ଚୂନା କରିଦେବୁ ।”

ଜୀବନ ସବୁ ଜାଣି ପାରିଲା । ଏମାନଙ୍କର କିଛି ଦୋଷ ନାହିଁ । ସେ ଜଗୁଆକୁ କହିଲା, “ଆରେ ଜଗୁ ତୁ ସ୍ଥିର ହୋ । ମୁଁ ତାର ପ୍ରତିକାର କରିବି । ଆଚ୍ଛା କହିଲୁ, ଜମିଦାର ଅଛନ୍ତି କି ନାହାନ୍ତି ?”

“କିଏ ? ସେ ବଦମାସ ? ନା, ସେ ଏଠାରେ ନାହିଁ । ଦୁଇ-ଦିନ ହେଲା କୁଆଡ଼େ ପଳାଇଛି । ତାର ଚମ୍ପୁଣ୍ଡି ଯୋଗେନ୍ଦ୍ର ଅଛି ।” ଜଗୁଆ ଉତ୍ତର ଦେଲା ।

ଜୀବନ କହିଲା, “ଆଚ୍ଛା ହେଉ, ମୁଁ ତ ଗ୍ରାମକୁ ଆସିଛି । ଏଠାରେ ଆଜି ରାତିକ ରହିବି । ଆଜି ରାତି ଦଶଟାବେଳେ ତମ ପାଖକୁ ତାହାକୁ ଜଣକୁ ନେଇ ଆସିବୁ । ଜମିଦାରଙ୍କ ଘରକୁ ଯିବା । ତୁ ଏକଥା କାହାକୁ କହନା, ମୁଁ ଟିକିଏ ଗାଁ ଭିତରେ ବୁଲି ଆସେ ।”

ଜଗୁଆ ହଁ କରି ଚାଲିଗଲା । ତାପରେ ଜୀବନ ମଇଳା ଲୁଗା ପଟା ସେଠାରେ ରଖି ଗାଁକୁ ବୁଲିବାକୁ ଗଲା । ଯେ ଜୀବନକୁ ଦେଖୁଥାଏ ସେ ବହୁତ କଥା ପଚାରେ, ତାକୁ ଅସ୍ଥିର କରି ପକାଉଥାଏ । ପିଲେ, ମାଇପେ, ବୁଢ଼ା, ବୁଢ଼ୀ ସମସ୍ତେ ଜୀବନକୁ ପ୍ରାଣଠାରୁ ଅଧିକ ସ୍ନେହ କରନ୍ତି, କେବଳ ଜମିଦାରଙ୍କ ଛଡ଼ା ।

ଗ୍ରାମବୁଲା ଜୀବନର ସରିଗଲା, କିଛି ଖବର ପାଇଲା ନାହିଁ । ସମସ୍ତଙ୍କୁ ପଚାରିଲା, କିନ୍ତୁ କେହି କିଛି ଉତ୍ତର ଦେଲେ ନାହିଁ । ଜୀବନ ଭାବିଲା, ଜମିଦାର କଣ ସମସ୍ତଙ୍କୁ ହାତ କରି ରଖିଛି ? ସମସ୍ତେ କଣ ତାର ଭୟରେ କିଛି କହୁ ନାହାନ୍ତି ? ଜମିଦାର କେତେବେଳେ କି ଭୟ ତାଙ୍କୁ ଦେଖାଇଛି !”

ଖୁନ୍—ଜୀବନ ଚମକି ଉଠିଲା । ତାର ଦେହ ଯନ୍ତ୍ରଣା ଅଶଂଭାବରେ ଥବ ଉଠିଲା, ସେପଟକୁ ଲକ୍ଷ୍ୟ ହୋଇ ଫେରି ଆସିଲା ଚଟିକୁ । ଖାଇବାକୁ ବାହାରିଲା, କିନ୍ତୁ ଖାଇ ପାରିଲା ନାହିଁ । ଟେଲଡ ଟ ହେଉଛନ୍ତି, କରିବ ବା କଣ ? ବାଧ୍ୟ ହୋଇ ଗଣ୍ଡେ କିଛି ଖାଇ ଦେଇ ବିଛଣାରେ ପଡିଗଲା, କେତେବେଳେ ତାକୁ ନିଦ ଆସିଲା ଜଣା ନାହିଁ । ନିଦ ଭାଙ୍ଗିଲା ବେଳକୁ ଦେଖେ ତ ରାତି ହୋଇଯାଇଛି । ଆଲୁଅଟି ଲଗାଇ କିଛି ସମୟ ବସିବା ପରେ ଜଗୁଆ ଅଉ ଜଣେ ଲୋକ ସହିତ ଆସି ଜୀବନ ପାଖରେ ପହଞ୍ଚିଲା ।

ସାଧାରଣତଃ ମଫସଲର ଲୋକେ ନୂଆ ହୋଇଲେ ରାତି ଦଶଟା ପର୍ଯ୍ୟନ୍ତ ବୁଲିଯାନ୍ତି । ତା'ର ପରେ ଶୋଇ ପଡନ୍ତି । ରାତି ଏଗାରଟା ବାଜିଲା, ଗ୍ରାମ ନିସ୍ତବ୍ଧ, ଜଗତ ସୁପ୍ତ, ଉପରେ ତାରକାଗଣ ଅର୍ଦ୍ଧ-ମୁଦ୍ରିତ ନୟନରେ ପୃଥିବୀଆଡ଼କୁ ଏକ ଦୃଷ୍ଟିରେ ଚାହିଁଛନ୍ତି । ଜୀବନ ଆଉ ବିଳମ୍ବ ନ କରି ଉଠି ଠିଆ ହେଲା । ଚମଡ଼ା ସୁଟ୍‌କେଶଟି ପିଠାଇ ପିନ୍ଧିଲାକି ବାହାର କଲା ଏବଂ ତାକୁ ପେଣ୍ଟ ପକେଟରେ ପୂରାଇ ଟର୍ଚ୍ଚଟି ଧରି ଆଗେ ଆଗେ ଚାଲିଲା । ପଛରେ ଜଗୁଆ ଏବଂ ଫଗୁଆ ଦୁଇ ବିଶାଳ ମୂର୍ତ୍ତି, ଦୁଇଟି ଠେଙ୍ଗା ଧରି ପ୍ରହରୀଭଳି କୁକୁର ପରି ଚାଲିବାକୁ ଲାଗିଲେ । ନିଶା ସାଇଁ ସାଇଁ ଗର୍ଜୁଛି । କିଛି ବାଟ ଯିବା ପରେ ତିନିଜଣ ଜମିଦାରଙ୍କ ଘର ସମ୍ମୁଖରେ ଆସି ପହଞ୍ଚିଲେ । ବୃଦ୍ଧ ଅଡ଼କୁ ଚନାଇ ଜୀବନ ଫାଟକ ଖୋଲି ଭିତରକୁ ପଶିଲା । ଅନ୍ୟ ଦୁହେଁ ପଛ । କ୍ରମେ ଘର ପାଖକୁ ଆସିଲେ ।

ଜୀବନ କହିଲା, "ଜଗୁଆ ତୁମେ ଦୁହେଁ ଏଇଠାରେ ଥାଅ । ମୁଁ ଭିତରକୁ ଯାଉଛି । ଯେ ଭିତରକୁ ଯିବ ବାଡ଼ ଡେଇଁବ ।"

ଏହା କହି ଜୀବନ କବାଟ ମେଲା କରିବା ପାଇଁ ଚେଷ୍ଟା କଲା । କିନ୍ତୁ ଭିତରୁ କବାଟ ଦିଆହୋଇଛି । ଶେଷକୁ ନିରାଶ ହୋଇ ଫେରି ଆସିଲା ଜଗୁଆ ପାଖକୁ । ଜଗୁଆକୁ ପଚାରିଲା, "ଜଗୁଆ ବାଡ଼ କବାଟ ମେଲା ଥିବ, ତାର ବାଟ କୁଆଡ଼େ ?" ଜଗୁଆ, ପଗୁଆକୁ ଛଡ଼ାଇ ଦେଇ ଜୀବନକୁ ଧରି ବାଡ଼ ଆଡ଼କୁ ଆସିଲା । ବାଡ଼ କବାଟ ମେଲା ଥିଲା । ସେଠାରେ ଜଗୁଆକୁ ଛାଡ଼ି ଜୀବନ ଏକୁଟିଆ ଘରେ ପଶିଲା । ଦୁଆର ପରେ ଦୁଆର ଅତିକ୍ରମ କଲା । ଦୁଇ ତିନିଟା ଦୁଆର ଅତିକ୍ରମ କରି ଜୀବନ ଉପରକୁ ଟର୍ଚ୍ଚ ପକାଇଲା, କିନ୍ତୁ ଦେଖି ଭିତରୁ କବାଟ ବନ୍ଦ, ଜୀବନ ଆସି ପହଞ୍ଚିଲା ଉପର ଘର ଦୁଆରେ । ପାରିଲା ନାହିଁ । କଡ଼ର ଉପରକୁ ସିଡ଼ି । ଉପରେ ଜମିଦାରଙ୍କ ଡ୍ରଇଂ ରୁମ୍ । ଜୀବନ ମନ ଦୁଃଖରେ ଫେରି ଆସୁଥିଲା । ହଠାତ୍ ତାର ନଜର ପଡ଼ିଲା ସିଡ଼ି ଉପରେ । ସେ ବାଉଁଶ ସିଡ଼ିଟାକୁ ନେଇ କାନ୍ଥରେ ଲଗାଇଲା ଏବଂ ଧୀରେ ଧୀରେ ଉପରକୁ ଚଢ଼ିଲା ।

ଉପର ଘର ବାରଣ୍ଡାକୁ ଆସି ଦେଖିଲା ଉପରେ ଆଠଟା ଘର । ମଝିଘରଟା ଡ୍ରଇଂ ରୁମ୍ । ଜୀବନ ଦେଖିଲା ସବୁ ଘର, ଭିତରୁ ବନ୍ଦ ଏବଂ ଡ୍ରଇଂ ରୁମର ବାହାରୁ ତାଲା ପଡ଼ିଛି । ସେ ଧୀରେ ଚାବି ଗୁଚ୍ଛ ବାହାର କଲା । ଗୋଟିକ ପରେ ଗୋଟିଏ ଲଗାଇଲା । ଶେଷକୁ ହଠାତ୍ ଦୁଆର ଖୋଲିଗଲା । ଜୀବନ ଭିତରେ ପଶି ଭିତରୁ କବାଟ ଦେଇ ଦେଲା । ତା ପରେ ଟର୍ଚ୍ଚ ମାରି ଦେଖିଲା ଘରଟି ନାନା ସୌଖିନ ସୌଖିନ ଜିନିଷରେ ସଜା ହୋଇଛି । ବହୁତ ପ୍ରକାର ଆଲମାରୀ, କାନ୍ଥ ଆଲମାରୀ, ଟେବୁଲ, ଚୌକି, ଥାକଗୁଡ଼ିରେ ବହି ପୂର୍ଣ୍ଣ । ଟେବୁଲ ଉପରେ ବହୁତ କାଗଜ ପତ୍ର ଥୁଆ ହୋଇଛି । ଜୀବନ ଗୋଟି ଗୋଟି କରି

ଦେଖିଗଲା । କିନ୍ତୁ ତା. ଉପରୁ କିଛି ପାଇଲା ନାହିଁ । ଶେଷକୁ ତାର ନଜର ପଡ଼ିଲା ଗୋଟିଏ ଛପା କାଗଜ ଉପରେ, । ଚିଠିଟା ଟାଇପ କରା ହୋଇଛି । ଜୀବନ ଖଣ୍ଡିଏ କାଗଜ କଲମ ବାହାର କରି ଲେଖିବାରେ ଲାଗିଲା । କିଛିକ୍ଷଣ ପରେ ଲେଖା ସରିଗଲା ।

ଜୀବନ ପଢ଼ିବାରେ ଲାଗି ଗଲା—ଲେଖାଅଛି

ମାନଙ୍କିତ

କଲିକତା ବହୁବଜାର ଷ୍ଟ୍ରୀଟ୍
ଘର ନମ୍ବର ୫୭
ତା ୭ । ୩ । ୪୧

ଏହି ବାଳକଙ୍କୁ ମୋ ଲୋକ ହାତ ପଠାଇଲି ଏବଂ ମୁଁ ଦୁଇଦିନ ଖୁଡ଼ ଯାଉଛି । ଏହାଙ୍କୁ ତୁମଘର ବନ୍ଦ ରଖିଥିବା । ଇତି ।

ତୁମ୍ଭର
ରଘୁବାବୁ

ଚିଠିଟି ପଢ଼ି ଜୀବନ ଥକା ମାରି ହୋଇ ବସି ପଡ଼ିଲା । ତା ଛାତିରୁ ଶବ୍ଦ ବାହାରିଲା ନାହିଁ । ସେ କିଛିକ୍ଷଣ ପରେ ଉଠି ସିଡ଼ିରେ ଓହ୍ଲାଇବାକୁ ଲାଗିଲା । ସିଡ଼ିରେ ଓହ୍ଲାଉଛି ଏହି ସମୟରେ ଜମିଦାରଙ୍କ ଗୁମାସ୍ତା ବାହାରକୁ ଉଠୁଛି । ସେ ସାଙ୍ଗରେ କିଏ ଜଣେ ପିଲା ବାଟେ ଓହ୍ଲାଇ ଯାଉଛି ଦେଖି ଫେରି ପଚାରିଲା । ଜୀବନ ସଙ୍ଗେ ସଙ୍ଗେ ତାକୁ ଅଡ଼ି ପିଲାଟି ବାଟ ନେଲା । ସମସ୍ତେ ଉଠିଲା ବେଳକୁ ଜୀବନ ଜଗୁଆ ଓ ପଗୁଆକୁ ନେଇ ବଟିଗ୍ରୁ ଘରକୁ ଆସିଲା ଏବଂ ରୁଷ୍ଟ ହୋଇ ଶୋଇ ରହିଲା । ଜଗୁଆ ପଚାରିଲା, "ବାବୁ କଅଣ ହେଲା" ? ଜୀବନ

ସବୁ ଠିକ୍ ଅଛି, "ଭଲ ! ସକାଳୁ ଉଠି ତୁମେ ତୁମ ଘରକୁ ଚାଲିଯିବ, ଯେ ଯାହା ପଚାରିବେ କେହି କିଛି କହିବ ନାହିଁ ।"

ସକାଳୁ ଉଗ୍ରଅ ଉଠି ଚାଲିଗଲା । ଜୀବନ ସକାଳୁ ଉଠି ନିତ୍ୟକର୍ମ ସାରି ସୁଟ୍‌କେଶ୍‌ରୁ ପାଉଁରୁଟି କାଢ଼ି ଖାଇଲା । ତାପରେ ମାଣି ଦିଇ ଗାଁ ଭିତରକୁ ଆସିଗଲା । ସେ ଯାହା ଭାବିଥିଲା, ତାହା ନିଜ ଆଖିରେ ଦେଖି ପାରିଲା । ଗାଁରେ ଠାକୁ ଠା ସଭା ବସିଛି, ପିଲାଙ୍କ ସଭା, ବୁଢ଼ାଙ୍କ ସଭା, ଟୋକାଙ୍କ ସଭା, ଗାଁ ମାଇପିଙ୍କ ସଭା । ସବୁଠାରେ ଖାଲି ରାତିରେ ଜମିଦାରଙ୍କ ଘରୁ ଚୋରି ଯିବା କଥା ପଡ଼ୁଛି । କିଏ କହୁଛି, ଗୋଟାଏ ଡେଙ୍ଗା ଲୋକ କଳା ପୋଷାକ ପିନ୍ଧି ଚୋରି କରିବାକୁ ଯାଇଥିଲା । କିଏ କହୁଛି ହାତରେ ଗୋଟିଏ ପିସ୍ତଲ ଧରିଥିଲା, କିଏ କହୁଛି ତା ହାତରେ ଗୋଟିଏ ଟର୍ଚ୍ଚ ଲାଇଟ ଜଳ ଜଳ କରୁଥିଲା । ଏହିପରି ନାନା ଆଲୋଚନାରେ ଗ୍ରାମ ସାରା ମୁଖର ହୋଇଥିଲା । କିଛି ସମୟ ପରେ ଗ୍ରାମରେ ଦାରୋଗା ଏବଂ କନେଷ୍ଟବଲମାନେ ଆସି ପହଞ୍ଚିଲେ । ବହୁତ ଲୋକଙ୍କଠାରୁ ଜମାନବନ୍ଦି ନିଆଗଲା । କିନ୍ତୁ ସଠିକ ଉତ୍ତର ମିଳିଲା ନାହିଁ । କିଛି ସମୟ ପରେ ଜୀବନ ଦାରୋଗାଙ୍କ ଘରକୁ ଫେରି ଆସିଲା । ସେଦିନ ସେ ଠିକ୍ କଲା ଗ୍ରାମ ଛାଡ଼ି ଚାଲିଯିବ । ଯେତିକି ଶୀଘ୍ର ଯାଏ ସେତିକି ଭଲ । ଏହା ଭାବି ସେହିଦିନ ସହରକୁ ଫେରି ଆସିଲା ।

ନବ ତାହା ପାଇଁ ଅପେକ୍ଷା କରିଥିଲା । ଜୀବନକୁ ଦେଖି ପଚାରିଲା, "ବନ୍ଧୁ, ଖବର କ'ଣ ?"

ଜୀବନ କହିଲା, "ଖବର ବହୁତ ଅଛି ।" କହି ଲୁଗା ପଟା ବଦଳାଇ ସବୁ କଥା କହିଗଲା । ଚିଠିଟି କାଢ଼ି ମଧ୍ୟ ଦେଖାଇଲା ।

ନବ ଚିଠିଟି ଦେଖି ଆଶ୍ଚର୍ଯ୍ୟ ହୋଇ କହିଲା, "ଜଟିଦ୍ୱାର ଏପରି ହୋଇପାରେ ?"

ଜୀବନ କହିଲା, "ଦେଖୁଛୁ ତ ।"

ତାପରେ ଦୁଇବନ୍ଧୁ ସ୍ଥିର କଲେ ସେଦିନ ସକାଳ ଗାଡ଼ିରେ କଲିକତା ଯିବେ । ରାତିରେ ସବୁ ଜିନିଷପତ୍ର ସଜଡ଼ା ସଜଡ଼ି କରି-ବାରେ ଲାଗିଲେ । ଘଣ୍ଟାଏ ଘଣ୍ଟାଏ ଖାଇ ଦେଇ ଦୁଇବନ୍ଧୁ ବିଛଣାରେ ପଡ଼ିଗଲେ ।

ତା' ପରଦିନ, ଟ୍ରେନ୍ ଷ୍ଟେସନରୁ ଦୁଇବନ୍ଧୁ ଉଠି ନିଜ ନିଜର ନିତ୍ୟକର୍ମ ସାରିବାକୁ ଗଲେ । ପନ୍ଦର ମିନିଟ ମଧ୍ୟରେ ସବୁ କାମ ସାରି ଦୁହେଁ ଡ୍ରେସିଂ ରୁମ୍‌ରେ ପଶିଲେ ଏବଂ ଦୁଇଟା ମୁସଲମାନ ବେଶ ଧରି ବାହାରି ଆସିଲେ । କିଏ କହିବ ଯେ ଜୀବନ ଏବଂ ନବ ଏ ରୂପ ଧରିଛନ୍ତି ବୋଲି । ବେଶ ଟ୍ରେନ୍ ନିଚୁଣ ଭାବରେ ଥିଲା । ଶାମରେ ତିନିହେଁ ଷ୍ଟେସନକୁ ବାହାରିଲେ । ନରହରି ଦୁଇ ବନ୍ଧୁଙ୍କର ଏପରି ବେଶ ଦେଖି ଆଶ୍ଚର୍ଯ୍ୟ ହୋଇଗଲା । ଡାକିଲା "ବାବୁ !" ଜୀବନ ବୁଝି ପାରିଲା, କହିଲା, "ବୁଝିପାରୁ ନାହୁଁ ନରହରି । ଆମେ ଯଦି ଏ ଛଦ୍ମବେଶରେ ନ ଯାଉ ତେବେ ଧରା ପଡ଼ିଯିବୁ । ଦସ୍ୟୁ ଦଳର ଲୋକେ ତ ଗୋଟାଏ ସ୍ଥାନରେ ନାହାନ୍ତି, ସେମାନେ ଚାରିଆଡ଼େ ବୁଲୁଛନ୍ତି । ହଉ ଶୀଘ୍ର ଚାଲ । ଡେରି ହୋଇ ହୋଇଗଲାଣି ।" ତିନିହେଁ ଖଣ୍ଡିଏ ଟ୍ୟାକ୍ସିରେ ବସି ପଡ଼ିଲେ ଟ୍ୟାକ୍ସି ଛୁଟିଲା ଷ୍ଟେସନ ଅଭିମୁଖେ ।

ପ୍ରାୟ ୧୫ ମିନିଟ ପରେ ଟ୍ୟାକ୍ସି ପହଞ୍ଚିଲା ଷ୍ଟେସନରେ । ଜୀବନ ଟାକ୍ସି ଭଡ଼ା ଚୁକାଇ ଦେଲା । ତିନିହେଁ ପ୍ଲାଟଫର୍ମ ଉପ-

ଢଳୁ ପଶିଲେ । ଯାତ୍ରୀଙ୍କ ଜମାଟ ନ ଥିଲେ । ଗାଡ଼ି ଆସିବାକୁ ଡେରି ଥିଲା । ତେଣୁ ଯାତ୍ରୀମାନେ ପ୍ଲାଟଫର୍ମରେ ଏକତ୍ର ସେକଣ୍ଡ ହେଉଥିଲେ । ସେମାନଙ୍କର କୋଳାହଳରେ ଷ୍ଟେସନ ମୁଖରିତ ହେଉଥିଲା । ନରହରିଙ୍କୁ ବିଦାୟ ଦେଇ ଦୁଇବନ୍ଧୁ ପ୍ଲାଟଫର୍ମ ଉପରକୁ ଗଲେ ।

ଜୀବନ କହିଲା, "ନବ, ଗୁଡ଼ା ଟିକିଏ ଖିଆଯାଉ ?" ନବ କହିଲା । 'ହଉ', ଦୁଇବନ୍ଧୁ ଗୋଟିଏ ହୋଟେଲ ଭିତରେ ପଶିଲେ । ଦେଖିଲେ ଦୁଇଜଣ ମୁସଲମାନ ଭଦ୍ରଲୋକ ଗୋଟିଏ ଟେବୁଲ ପାଖରେ ବସି କଥାବାର୍ତ୍ତା ହେଉଛନ୍ତି ଏବଂ ଗୁଡ଼ା ଖାଉଛନ୍ତି । ଜୀବନ ଏବଂ ନବ ମଧ୍ୟ ପାଖରେ ଥିବା ଗୋଟିଏ ଟେବୁଲ ପାଖରେ ବସି ଗୁଡ଼ାର ବରାଦ କଲେ । ଗୁଡ଼ା ଆସିଲା । ନବ ଓ ଜୀବନ ଗୁଡ଼ା ଖିଆ ଆରମ୍ଭ କଲେ । ତାଙ୍କ କର୍ଣ୍ଣ କୁହରରେ ଦୁଇ ଭଦ୍ରଲୋକଙ୍କ କଥା ଆସି ପଡୁଥାଏ ।

ଜଣେ କହିଲା, "ବୁଝିଲ ରହମନ୍ ।"

ଅନ୍ୟଜଣେ କହିଲା, "ନ କହିଲେ ବୁଝିବି କେମିତି ?"

ପ୍ରଥମ ଜଣକ କହିଲା, "ନରହରିପୁରର ରଘୁ ଚୌଧୁରୀକୁ ଜାଣୁ ।"

"ଅଲେ ଜାଣେ ନା, କହିଲ କଥା, ଏ ହେଲା କଣ ।"

ଅନ୍ୟ ଜଣକ ଉତ୍ତର ଦେଲା ।

ସେ ପୁଣି ଆରମ୍ଭ କଲା । ଜମିଦାର ମୋ ମାରଫତରେ ଗୋଟିଏ ଚିଠିକୁ ପଠାଇଥିଲେ । ସେ ଚିଠିକୁ ମୁଁ ଠିକ ସ୍ଥାନରେ ପହଞ୍ଚାଇ ଦେଇଛି । ମୋତେ ସେଥିଁ ବକ୍‌ସିସ୍ ମିଳିଲରେ ଅ[illegible] ଜଣ କହିବ, ଏକ ହଜାର ଟଙ୍କା । ପୁଣି ଆଉ କହିଛନ୍ତି ଯଦି ଜୀବନର ମୁଣ୍ଡଟା

ଅଣିଦେବ, ତେବେ ୫ ହଜାର ମିଳିବ । କେତେ ଟଙ୍କା ପାଇଲେ ସିନା ଆମର ବଂଶ ବଞ୍ଚାଇବା । ନୋହିଲେ ହେବ କପର ବୁଝିଲ, ମୁଁ ଆଜ ଅଧିକା ପାଇଁ କହୁଛି । ସେ କହୁଛନ୍ତି ଓଯ, ସେ ହିଅଲୁ କବାଡ଼ ଭରିପାରିବା ପରେ ଅଦ୍ଭୁତ ଟଙ୍କା ଦେବେ ।

ଜୀବନ ଏ କଥା ଶୁଣିବାକୁ ଆଗ୍ରହ ହୋଇ ବସି ରହିଲା । ସେ ଭାବିବାକୁ ଲାଗିଲା ଯେ, ସେ ଦସ୍ୟୁମାନଙ୍କୁ ଠିକ ସ୍ଥାନରେ ଅଧୀନ କରିପାରିବ ।

ଏକ ଜଣକ ଜୀବନ ଅଡ଼କୁ ଚାହିଁ କହିଲା, "ଆଚ୍ଛା ଯଦି ଚେଷ୍ଟା ପଛରେ ପଛରେ ସେ ଲାଗିଥାଏ ?"

"କେବେ ପାରିବ ନାଁ ଭଣ, ଜୀବନ, ସେ ଜାଣେ କଥଣ । ସେମାନେ ତାର ଏତେ ମୁଣ୍ଡ କାହିଁ ଯେ ଆମର ଡାକୁର ପଛରେ ଲାଗିବ । ଅସମ୍ଭବ !" ସେ ମୁସଲମାନଟି କହିଲା ।

ଏହି ସମୟରେ ଗାଡ଼ି ଅଟକି ପହଞ୍ଚିଗଲା । ଜୀବନ ଏବଂ ନବ ଓହ୍ଲାଇଲେ । ଭଦ୍ରଲୋକ ଦୁଇଜଣ ମଧ୍ୟ ଓହ୍ଲାଇଲେ । ଗୋଟିଏ ଇଣ୍ଟର କ୍ଲାସରେ ଜୀବନ ଏବଂ ନବ ପଶିଲେ ଏବଂ ସେଥିରେ ରହିମନ୍ ଏବଂ ତାର ଅନ୍ୟ ଲୋକଙ୍କୁ ମଧ୍ୟ ଚଢ଼ିଲେ ।

ଜୀବନ ନବକୁ ଡାକି କହିଲା, "ଦେଖ, ହୁସିଆର । ଗୋଳମାଳ କରିବୁ ନାହିଁ । ମୋର ସଙ୍ଗେ ଏକାଠିବାରେ ଯାଉଛୁ । କିଛି କହିବୁ ନାହିଁ ।"

ନବ କହିଲା, "ମୋତେ ବୁଦ୍ଧି ଶିଖାଉଛୁ ଜୀବନ, ମୁଁ କଣ ତା ଜାଣେ ନାଁ ।" । ଦୁଇବନ୍ଧୁ ଗାଡ଼ିରେ ବସିଲେ ।

ଗାଡ଼ ଗୁଡ଼ିକ ପୂର୍ଣ୍ଣବେଗରେ । ଷ୍ଟେସନ ପରେ ଷ୍ଟେସନ ଅତିକ୍ରମ କରି ଗାଡ଼ି ଗୁଡ଼ିଥାଏ । ଜୀବନ ଏବଂ ନବ ଚୁପ ହୋଇ ବସିରହି ଥାଆନ୍ତି । କେତେକ ଷ୍ଟେସନ ପରେ ରହମନ୍ ଜୀବନକୁ ପଚାରିଲା, "ଆପଣ କୁଆଡ଼େ ଯିବେ [ ଅବଶ୍ୟ ହିନ୍ଦିରେ ]" ଏବଂ ଜୀବନ ମଧ୍ୟ ହିନ୍ଦିରେ ଉତ୍ତର ଦେଲା "କଲିକତା" ।

"ସେ କିଏ ?" ରହମନ୍ ପଚାରିଲା ।

"ମୋର ଜଣେ ବନ୍ଧୁ" । ଜୀବନ ଉତ୍ତର ଦେଲା ।

"ତୁମ ନାମ କଣ, ରହିବ କେଉଁଠି !" ରହମନ ପଚାରିଲା ।

ଜୀବନ କହିଲା, "ମୋର ନାମ ଅସଫ୍ ଖାଁ । ମୁଁ କୁଲିଯାଉଛି । ପ୍ରଥମେ ଗୋଟାଏ ହୋଟେଲରେ ଏବଂ ପରେ ଗୋଟିଏ ଘରଭଡ଼ା କରି କିଛିଦିନ ପାଇଁ ରହିବ ।"

ଏହିପରି କଥାବାର୍ତ୍ତା ହେଉ ହେଉ କେତେ କଥା ପଡ଼ିଗଲା । ସମସ୍ତେ ସମସ୍ତଙ୍କ ନାମ ଜାଣିଲେ । ଅଳ୍ପେ ଅଳ୍ପେ ବନ୍ଧୁ ତିନିଜଣଙ୍କ ମଧ୍ୟରେ ଘନିଷ୍ଠ ବନ୍ଧୁତା ହୋଇଗଲା । ରହମନ୍ କହିଲା, "କଲିକତା ବହୁବଜାର ଷ୍ଟ୍ରିଟରେ ନଂ ୫୭୯ ମ୍ବର ଘରେ ମୁଁ ଅଛି । ସେଠାରେ ମୋର ଦେଖା ପାଇବ । ବାହାରୁ ଦେଖିଲେ ସେଇଥି ଅବସ୍ଥିତି ଜଣାଯିବ ନାହିଁ । ଏକ ମହଲା ଭଙ୍ଗା ଦଦରା କୋଠା ଘର । କିନ୍ତୁ ଭିତରକୁ ମୁଁ ନେଇଯିବ ଏବଂ ତା ଭିତରକୁ ଗଲେ ତୁମ ଆଖି ବୁଲି ହୋଇଯିବ । ବହୁତ ପ୍ରକାର ପଦାର୍ଥ ସେଠାରେ ଅଛି, ଯାହାକି ତୁମେ ଜୀବନରେ ଦେଖି ନ ଥିବ । ସେଠାକୁ ଯାଇ ମୋ ନାମ କହିଲେ ସେଠାରେ ଯେଉଁ ଲୋକ ଥିବ ସେ ଭିତରକୁ ଛାଡ଼ି ଦେବ । ସନ୍ଧ୍ୟା ଭିତରକୁ ପଶିଯିବ । ସେଠାରେ ମତେ ନିଶ୍ଚୟ ପାଇବ ବୁଝିଲ ।"

ଏହାପରେ କଥାବାର୍ତ୍ତା ହେଉ ହେଉ ଗାଡ଼ି ଆସି ପହଞ୍ଚିଲା, ଖଡ଼ଗ୍‌ପୁରଠାରେ । ଘଣ୍ଟା ୧୨ଟା । ଗାଡ଼ି କିଛି ସମୟ ରହି ଛାଡ଼ିଲା । ସମସ୍ତେ ନିଦରେ ଅଚେତନ । ଏକା ଜୀବନ ନୁହେଁ, ସେ ତାର ଭବିଷ୍ୟତ କଳ୍ପନା କରୁଛି । କିଛି ବେଳପରେ ଜୀବନ ଉଠି ଠିଆ ହେଲା । ସୁଟକେସ୍‌ଟି ଫିଟାଇ ଗୋଟାଏ ଛୁରି ବାହାର କଲା । ଭୟଙ୍କର ଦୃଶ୍ୟ । ଶୁଙ୍ଘାଇ ଦେବେ ମନୁଷ୍ୟର ବଞ୍ଚି ରହିବାର ଆଶା ନାହିଁ । ଜୀବନର ହାତ ଥରିଲା । ଗଲାନାହିଁ ପ୍ରଥମେ ଏତେ ବଡ଼ ପାପକାମ କରିବାକୁ । କିନ୍ତୁ ବଦମାସ୍‌ମାନଙ୍କୁ ଉଚିତ ଶାସ୍ତି ଦେଲେ ତାର ଜୀବନ ସାର୍ଥକ ହେବ ନାହିଁ । ତାର ମନୋବାଞ୍ଛା ପୂର୍ଣ୍ଣ ହେବ-ନାହିଁ । ଉତ୍ୟକ୍ତ ହୋଇ ଉଠିଲା ସେ । ଧୀରେ ଧୀରେ ସେ ରହମନ୍‌ ଏବଂ ତାର ବନ୍ଧୁ ନିକଟକୁ ଗଲା । ନାକ ପାଖରେ ହାତ ରଖିଲା । ନାକେ ଡାକି ଶୋଇଛନ୍ତି । ପ୍ରଥମେ ରହମନ୍‌ର ବନ୍ଧୁ ନିକଟକୁ ଯାଇ ପେଟଟି ଖୋଲିଦେଲା । ସଙ୍ଗେ ସଙ୍ଗେ ଗୋଟିଏ କରୁଣ ଆର୍ତ୍ତନାଦ କରି ଲୋକଟି ତଳେ ପଡ଼ିଲା । ତାପରେ ସେ ଭୁଲିଗଲା ରହମନ୍‌ ପାଖକୁ ଗଲାବେଳକୁ, ଭୁଲି ପାରିଲା ନାହିଁ । ପଛରୁ ତା ବେକକୁ କିଏ ମାଡ଼ିବସିଛି । ଯଦିଓ ଜୀବନର ଛୁରି ବଳଥିଲା ତଥାପି ସେ ତାର ହାତ ସହ କ ପାରି ତଳେ ପଡ଼ିଗଲା । ତାକୁ ଜଣାଗଲା ତା ପିଠି ଉପରେ କିଏ ବସି, ହସୁଛି । ସେ ଧୀରେ ଧୀରେ ଗୋଡ଼ ଦୁଇଟାକୁ ଉପରକୁ ଉଠାଇଲା ଏବଂ ସଙ୍ଗେ ସଙ୍ଗେ ସେ ଲୋକର ବେକକୁ ଗୋଡ଼ ଦୁଇଟାରେ ଗୁଡ଼ାଇ ଭିଡ଼ି ଧରିଲା । ଲୋକଟି ସଙ୍ଗେ ସଙ୍ଗେ ତଳେ ପଡ଼ିଗଲା ଏବଂ ଜୀବନ ତାକୁ ମାଡ଼ିବସି ତା ହାତରୁ ହଠାତ୍‌ ଛୁରିଟା କାଢ଼ିନେଲା । ଦେଖିଲା ଯେ ସେ ରହମନ୍‌ । ଜୀବନ କାଳ ବିଳମ୍ବ ନ କରି ବସାନ୍ତ ବାଷ୍ପ ତା ନାକ ନିକଟରେ ଦେଖାଇଲା । ସେ ମଧ୍ୟ

ଗୋଟିଏ କରୁଣ ଚିତ୍କାର କଣ୍ଠ ପଡ଼ିଗଲା । ଜୀବନ ସଙ୍ଗେ ସଙ୍ଗେ ଉଠି ତାର ଗୋଟାଏ ବଡ଼ ହାତରେ ନବ ଦୁହିଁଙ୍କୁ ଟେକିଇ ଦେଲା । ନବକୁ ଉଠାଇ ସବୁ କଥା କହିଗଲା । ନବ ତାର ପ୍ରଶଂସା ନ କରି ରହିପାରିଲା ନାହିଁ । ତା ପରେ ସକାଳକୁ ଗାଡ଼ି ହାବଡ଼ାରେ ପହଞ୍ଚିଲା । ଏମାନେ ତର ତର କରି ସେ ଗାଡ଼ିରୁ ଓହ୍ଲାଇ ଚାଲି-ଗଲେ । ବାହାରେ ଗୋଟିଏ ଟ୍ୟାକ୍ସି ଧରି ଚାଲିଲେ କଲିକତାରର ଗୋଟାଏ ବଡ଼ ହୋଟେଲକୁ ।

ବଡ଼ ଧରଣର ହୋଟେଲ । ନାମଜାଦା ହୋଟେଲ । ବହୁତ ଲୋକଙ୍କ କାରବାର । ଗରିବମାନଙ୍କ ଦ୍ୱାରା ସବାଗ୍ର ମଧ୍ୟ ଭିଡ଼ । ଜୀବନ ଏବଂ ନବ ମଧ୍ୟ ଓହ୍ଲାଇଲେ ସେଇଠି । ଜୀବନ ମ୍ୟାନେଜରଙ୍କୁ ଡକାଇ ପଠାଇଲା । ମ୍ୟାନେଜର ବାହାରି ଆସିଲେ । ମ୍ୟାନେଜରଙ୍କୁ ଦେଖି ଜୀବନ ଆଶ୍ଚର୍ଯ୍ୟ ହୋଇଗଲା । ମ୍ୟାନେଜର ବୃଦ୍ଧ, ଗେଡ଼ା, ଜଣ ଦାନ୍ତ ପାଚିଗଲାଣି । ମୁଣ୍ଡଟି ଟାଙ୍ଗରା । ସେଥିରେ ମଧ୍ୟ ଫେସନ୍ କମି ନାହିଁ । ଫୁଲପେଣ୍ଟ ଏବଂ ସାର୍ଟ ପିନ୍ଧିଛନ୍ତି । ଆସି ଜୀବନ ସମ୍ମୁଖରେ ଠିଆ ହୋଇଗଲେ । ସେ ମଧ୍ୟ ଜାଣିହୁଏ ବୋଧହୁଏ ଏ ଦୁଇଜଣଙ୍କୁ ଦେଖି ଚମକି ଉଠିଲେ, ଯାହା ହେଉ ଖଣ୍ଡିଏ ଚେୟାର ଟାଣି ଆଣି ପାଖରେ ବସିଲେ । ଜୀବନ ସ୍ୱର ବଦଳାଇ କହିଲା, "ଆମେ ଦୁହେଁ ବମ୍ବେରୁ ଆସିଛୁ । ଏଠାରେ କିଛିଦିନ ବୁଲି ଚାଲି କରିବୁ ବୋଲି । ଆମର ପ୍ରାୟ ଏକମାସପାଇଁ ଗୋଟିଏ ଘର ଦରକାର । ଆପଣଙ୍କର ଏଠାରେ ଘର ଖାଲି ଅଛି ?"

ମ୍ୟାନେଜର ଟିକିଏ ଭାବି କହିଲେ, "ହଁ ଅଛି ।" କିନ୍ତୁ ମାସକୁ ଘରଭଡ଼ା ଟ ୫୦୯ ପଡ଼ିବ ।

"ସେଥିରେ କିଛି ଆପତ୍ତି ନାହିଁ ।" ଜୀବନ କହିଲା ।

"ଆପଣମାନେ ବମ୍ବେରେ କଣ କରନ୍ତି ?" ମ୍ୟାନେଜର ପଚାରିଲେ

ନବ କହିଲା, "ଆମେ ଦୁହେଁ ଦୁଇଭାଇ । ସେଠାର ଜଣେ ବଡ଼ ସେଠଙ୍କ ପୁଅ । ଚାକିରୀ କରିବା ପାଇଁ ଆସିଛୁଁ । ପାଠପଢ଼ା ସାର ଚୁଲିଛୁ । ଯଦି ମୋଟା ବେତନରେ ଚାକିରୀ କେଉଁଠି ମିଳିବ ତେବେ କରିବୁ ।"

ମ୍ୟାନେଜର ବଣ ଖୁବ ହଠାତ୍ ପଚାରିଲା, "ଅଚ୍ଛା, ଆପଣ-ମାନେ ଚାକିରୀ କରିବେ ?"

"ଯଦି ସେଇପରି ମିଳିବ ତେବେ ନ କରିବୁ କାହିଁକି ?" ନବ କହିଲା ।

ତାପରେ ମ୍ୟାନେଜର ଚାରିଅଡ଼କୁ ଚାହିଁ କଲିଙ୍ଗ୍ ବେଲ୍‌ରେ ଚାକରକୁ ଡାକିଲେ ଏବଂ କହିଲେ, "ଏ ଦୁଇବାବୁଙ୍କୁ ଉପରର ନଅର ପାଖରେ ଯେଉଁ ଘରଟି ଅଛି ସେଇଠିକୁ ନେଇ ଯାଅ" । ଅଧ ସେକେଣ୍ଡ ଜୀବନକୁ କହିଲେ, "ଆପଣ ଏ ଟୋକା ସଙ୍ଗରେ ଯାଆନ୍ତୁ । ମୁଁ ଟିକିଏ କାମ ସାରି ଯାଉଛି ।"

ଜୀବନ ଏବଂ ନବ ଟୋକା ପଛେ ପଛେ ଚାଲିଲେ । ଉପରେ ପ୍ରାୟ ୧୦।୧୨ଟା ଘର ହେବ । ସବୁ ବେଶ୍ ଫେସନ୍‌ରେ ତିଆରି । ମଜା ମଜଲିସ କରିବାକୁ ସବୁ ସୁବିଧା । ଚାକର ଟୋକା ଜୀବନକୁ ଘରଟି ଦେଖାଇ ଦେଇ ଚାଲିଗଲା । ଜୀବନ ଏବଂ ନବ ଘର ଭିତରକୁ ପଶିଲେ । ଘରଟି ଖଟ, ଟେବୁଲ, ଚୌକିରେ ପୂର୍ଣ୍ଣ । ତାଛଡ଼ା ଆଲମାରୀ, ବିଜୁଳିବତୀ, ବିଜୁଳି ପଙ୍ଖା । ଏଛଡ଼ା ମଧ୍ୟ କେତେକ ସୁନ୍ଦର ସୁନ୍ଦର ଉପକରଣରେ ଘରଟି ପୂର୍ଣ୍ଣ । ଜୀବନ ଏବଂ ନବ ତାଙ୍କ ଜିନିଷପତ୍ର ସଜାଡ଼ି ବସୁ ରହୁ ନବ କହିଲା, "ଜୀବନ ବର୍ତ୍ତମାନ କଣ କରିବା ?"

ଜୀବନ କହିଲେ; "ବ୍ୟସ୍ତ ହୁଅନ୍ତୁ ନାହିଁ! ଯାହା ହେବାର ହେବ, ଦେଖାଯିବ।"

"ତୁ କଣ ସବୁଟି କହିଲ ଜୀବନ।" ନବ ପଚାରିଲେ।

ଜୀବନ କହିଲେ "ମୋର ଅନୁମାନ, ଏ ମ୍ୟାନେଜରର ଦସ୍ୟୁମାନଙ୍କ ମଧ୍ୟରୁ ଜଣେ।"

"ତୁ କପରି ଜାଣିଲ?" ନବ ପଚାରିଲେ।

ଜୀବନ କହିଲେ, "ତା ଚାଲିଚଳନରୁ।"

ଏହି ସମୟରେ ବାହାରେ କାହାର ପାଦ ଶବ୍ଦ ଶୁଣାଗଲା। ଦୁଇବନ୍ଧୁ ହଠାତ୍ ଉଠି ଠିଆ ହେଲେ। ଧୀରେ ଧୀରେ ଖଣ୍ଡିଏ କାଗଜ ହାତରେ ଧରି ଭିତରକୁ ପଶିଲେ ମ୍ୟାନେଜର। ମ୍ୟାନେଜର ଭିତରକୁ ଆସି କବାଟ ଭିତରୁ ଦେବାକୁ ଇଙ୍ଗିତ କଲେ। ନବ କବାଟ ବନ୍ଦ କଲେ। ତାପରେ ମ୍ୟାନେଜର ଚୌକି ଉପରେ ବସି ଜୀବନ ଆଡ଼କୁ କାଗଜ ଖଣ୍ଡିକ ବଢ଼ାଇ ଦେଲେ। ଅମୃତବଜାର ପତ୍ରିକା। ବଡ଼ ବଡ଼ ଅକ୍ଷରରେ ଏବଂ ଇଂରାଜୀରେ ଲେଖାଅଛି, "ଡାକ୍ ଟ୍ରେନ୍‌ରେ ଖୁନ୍।"

ଦୁଇଜଣ ମୁସଲମାନ ଡାକୁଙ୍କୁ କେହି ଜଣେ ଖୁନ୍ କରିଅଛନ୍ତି। ପ୍ରଥମେ ପୋଲିସ ତାଙ୍କୁ ଭଦ୍ରଲୋକ ବୋଲି ଭାବିଥିଲା, କିନ୍ତୁ ପରେ ତାଙ୍କ ପାଖରୁ ଖଣ୍ଡିଏ କାଗଜ ବାହାରିଲା। ସେଥିରେ ଯାହା ଲେଖାଥିଲା, ଜଣାଗଲା ଯେ ସେମାନେ ଦସ୍ୟୁ। କିଏ ଏପରି ସାହସିକ ବ୍ୟକ୍ତି ଯେ କି ଦୁଇଟା ଦସ୍ୟୁଙ୍କୁ ଖୁନ୍ କରି ଦେଇପାରେ। ଅଦ୍ଭୁତ ମଧ୍ୟ ବର୍ତ୍ତମାନ କଲିକତାରେ ଦସ୍ୟୁମାନେ ବଡ଼ ପ୍ରବଳ ହେଲେଣି। ବହୁତ ଲୋକ ଉତ୍ପୀଡ଼ିତ ହେଲାଣି। ପୁଲିସ ପକ୍ଷ ବହୁ ଉଦ୍ୟମ କରିସୁଦ୍ଧା ପ୍ରକୃତ ଦସ୍ୟୁକୁ ଧରିପାରୁ ନାହାନ୍ତି। ଏଣୁ

ଏହା ମଧ୍ୟରେ ସେହି ଯୁବକଙ୍କୁ ତାଙ୍କର ଅସୀମ ସାହାଯ୍ୟତା ହେତୁ ତାଙ୍କୁ ଧନ୍ୟବାଦ ଦଆଯ ଉଛୁ ।

ଜୀବନ ଏବଂ ନବ ଲେଖାଟିକୁ ୨।୪ ଥର ପଢ଼ି ମ୍ୟାନେଜରଙ୍କୁ ଫେରାଇ ଦେଲେ ।

ମ୍ୟାନେଜର କହିଲେ, "ପଢ଼ିଲ ।"

ଜୀବନ କହିଲା, "ହଁ ପଢ଼ିଲି । କିନ୍ତୁ ଆମର ସେଥିରେ ଯାଏ କଣ ଆସେ କଣ ।"

ମ୍ୟାନେଜର ଏକଥା ଶୁଣି ରଗିଉଠିଲେ, କିନ୍ତୁ ରଗିଗଲେ ତ ହେବ ନାହିଁ । ଦୁଇ ଦୁଇଟା ଶିକାର ଖସି ପଳାଇବେ । ସେ ମନର ଭାବନା ଗୋପନ ରଖି କହିଲେ, "ଦେଖ ତୁମେମାନେ ଯୁବକ । ତୁମମାନଙ୍କ ଦେହରେ ଅସୀମ ବଳ । ତୁମେ ସବୁ କାମ ଅନାୟାସରେ କରିପାର । ମୁଁ ଯେଉଁ କାର୍ଯ୍ୟଟି ଦେବି ଯଦି ତାହା ଅସାଧ୍ୟ, ତଥାପି ତୁମେ ଇଚ୍ଛା କଲେ ସବୁ ସହଜ ସାଧ୍ୟ ହୋଇ ପାରିବ ।"

ଜୀବନର ମନରୁ ସବୁ ସନ୍ଦେହ ଦୂର ହୋଇଗଲା । ସେ ଭାବିବାକୁ ଲାଗିଲା ଯେ, ସେ ଠିକ୍ ସ୍ଥାନରେ ଆସି ପହଞ୍ଚିଛି । ସେ ନିଜର ମନୋଭାବ ଲୁଚାଇ କହିଲା, "କଣ ଶୀଘ୍ର କହନ୍ତୁ । ଶୁଣିବାକୁ ଆମ ମନ ବଡ଼ ଅସ୍ଥିର ହେଉଛି ।"

ମ୍ୟାନେଜର ଆଉ ଟିକିଏ ପାଖକୁ ଘୁଞ୍ଚି ଆସି କହିଲେ, "ଆପଣମାନେ ଉଡ଼ାଇ କରିପାରିବେ ? ବନ୍ଧୁକ ମାରି ପାରିବେ ? ସବୁ ବିପଦକୁ ଝାସ ପକେଇ ଦେଇ ପାରିବେ ?"

ଏକଥା ଶୁଣି ନବ ଶଙ୍କି ଯାଉଥିଲା, କିନ୍ତୁ ପରେ କଣ ଭାବିଲା କେଜାଣି କହିଲା, "ହଁ ପାରିବୁ ନାହିଁ କାହିଁକି ?"

"ଗାନା, ବାଜଣା ଜାଣ ତ ?" ମ୍ୟାନେଜର ପଚାରିଲେ ।

ନବ ଭାବି ପାରିଲା ନାହିଁ । ବିପଦ ବହୁଳ ଜୀବନ ଭିତରେ ରହିବଟା କାହିଁକି ? ଭାବି ପାରିଲା ନାହିଁ ରହସ୍ୟ କଣ ? କାହା ଭିତରେ ସେମାନେ ଗୋଡ ଦେଇଛନ୍ତି । ସାଙ୍ଗ ଭିତର ଯାହାର ବନ୍ଧନରେ ଥାଇହେଲ, ସେମାନଙ୍କ ପାଖରେ ଗୁପ୍ତକଥା କହିବା ଅର୍ଥ, ପରେ ମର ବନ୍ଧୁ ହଟିବା ତାହା । ଯାହାହେଉ ଦେଖାକୁ ତ ଯେ କୌଣସି ପ୍ରକାରେ ଉଦ୍ଧାର କରିବାକୁ ହେବ । ବଳ ଆସିଲା, ମନରେ ଦୃଢ଼ତା ଆସିଲା ।

ନବ କହିଲା, "କିଛି କିଛି ଜାଣେ ।"

"ବେଶ, ବେଶ, ସେତିକି ଦରକାର", ମ୍ୟାନେଜର କହି ଉଠିଲେ ।

ତାପରେ ମ୍ୟାନେଜର ନିଜ ସ୍ଥାନରୁ ଉଠି ଠିଆ ହେଲେ ଏବଂ କହିଲେ, "ଅଚ୍ଛା, ଆଜି ରାତିରେ ମୁଁ ଛୁଟି ଆସେ ଏବଂ ଭାଲୁକ ତୁମକୁ ସେଠାକୁ ନେଇଯିବ । 'ଯାଉଛୁ' କହି ମ୍ୟାନେଜର ଚାଲିଗଲେ ।

—୪—

ତା ପରଦିନ ସନ୍ଧ୍ୟା । ମ୍ୟାନେଜର ଆସି କହିଗଲେ ଯେ, ରାତି ଦୁଇଟା ବେଳକୁ ଠିକ୍ ହୋଇଥିବେ । ଆସି ନେଇ ଯିବେ । ଏତିକି କହିଦେଇ ମ୍ୟାନେଜର ଚାଲିଗଲେ ।

ତାପରେ ଭାବନା ପଡ଼ିଲା ନୂଆ ବନ୍ଧୁଙ୍କର । କେଉଁଠିକି ଯିବେ, କରିବେ କଣ ? ଯଦି ପୁଲିସକୁ ନୁହେଁ ତ । ସେଠାକୁ ଗଲେ ଫେରି ଆସି ପାରିବେ ତ । ବିଶ୍ୱାସ ହେଉ ନାହିଁ । ତେବେ କଣ ମୃତ୍ୟୁ ! ହୁଁ, ହୁଁ, ମୃତ୍ୟୁ ବରଂ ଭଲ, କିନ୍ତୁ ଲୋକକୁ ଏପରି ବିପଦରେ ପକାଇ ଯିବାଟା ଉଚିତ ନୁହେଁ ।

ଦୁଇବନ୍ଧୁ ସ୍ଥିର କଲେ ଯେତେ ବିପଦ ପଡ଼ୁ ପଛକେ ସହୁବେ, କିନ୍ତୁ ନିଶ୍ଚୟ ଯିବାକୁ ହେବ ।

ଏହି ସମୟରେ ଖାନସାମା ଆସି ଖାଇବାର ଦେଇଗଲା । ଦୁଇବନ୍ଧୁଙ୍କର ଖାଇବାକୁ ଆଦୌ ଇଚ୍ଛା ନ ଥିଲା, କିନ୍ତୁ ବାଧ୍ୟ ହୋଇ ଖାଇ ବସିଲେ । ଦୁ' ଗଣ୍ଟା ଖାଇ ଦେଇ ବିଛଣାରେ ପଡ଼ିଗଲେ ।

ପୁଣି ଭାବନା । ଦୁହିଁଙ୍କ ମନରେ ଏକପ୍ରକାର ଭାବନା ଚାଲିଛି । ଏହାରି ମଧ୍ୟରେ ଯେ ଦୁଇଟା ବାଜିଲାଣି ତାହାର ଖିଆଲ ନାହିଁ । ମ୍ୟାନେଜର ଆସି ଡାକିବାରୁ ଭାବନା ଭାଙ୍ଗିଲା । ଦୁଇବନ୍ଧୁ ଉଠି ବସିଲେ । ମ୍ୟାନେଜରର ବେଶ ଦେଖି ସେମାନେ ଡରିଗଲେ । କଳା ପୋଷାକ, ହାତରେ ଛୁରୀ ଚକ୍ ଚକ୍ କରୁଛି । ଦୁଇ ପକେଟରେ ଦୁଇଟା ପିସ୍ତଲ ଗୁଳିରେ ଭର୍ତ୍ତି ।

ମ୍ୟାନେଜର ଦୁଇଟା ପୋଷାକ ତାଙ୍କ ଆଗକୁ ପକାଇ ଦେଇ କହିଲେ, "ଶୀଘ୍ର ପିନ୍ଧି ବାହାରି ଆସ । ଡେରି କର ନାହିଁ ।"

ଦୁଇବନ୍ଧୁ ପୋଷାକ ଦୁଇଟା ଉଠାଇ ନେଇ ଥରି ଥରି ପିନ୍ଧିବାକୁ ଲାଗିଲେ । ସେମାନଙ୍କ ଭୟ ଦେଖି ମ୍ୟାନେଜର ନ ହସି ରହି ପାରିଲେ ନାହିଁ । ଓଃ, କି ଭୀଷଣ ହସ । ସତେ କି ଯେପରି ଘରଟା ଫାଟିଯିବ ।

ମ୍ୟାନେଜର ହସି ହସି କହିଲେ, "ସେଠାକୁ ନ ଯାଉଣୁ ତ ଏତେ ଭୟ କରୁଛ । ଆଉ ସେଠାକୁ ଗଲେ ବୋଧେ ଏକାଥରକେ ଶେଷ ହୋଇଯିବ । ସେଠାରେ ଏତେ ଭୟଙ୍କର ଜିନିଷ ଅଛି, ଯାହା ଦେଖିଲେ ତୁମର ପିଳେହି ପାଣି ହୋଇଯିବ । ଦମ୍ଭ ଧରି ନ ଗଲେ ବଡ଼ ବିପଦ ।"

ଏକଥା ଶୁଣି ବୁଢ଼ୀଙ୍କର ଅନ୍ତର ଉତ୍କଣ୍ଠା ଆଉ ବଢ଼ିଗଲା । ମନେ ହେଲା, ସେ ପିଶାଚଟାକୁ ସଙ୍ଗେ ସଙ୍ଗେ ମାରିଦେବେ ବୋଲି । କିନ୍ତୁ ତା କଲେ ତ ତାଙ୍କର ମନୋବାଞ୍ଛା ପୂର୍ଣ୍ଣ ହେବ ନାହିଁ ! ସ୍ଥିର ହେଲେ । କିମ୍ବା ଧରି ମ୍ୟାନେଜରର ପଛରେ ଚାଲିଲେ ।

ଅନ୍ଧାର ରାତି । ନିସ୍ତବ୍ଧ ପୃଥିବୀ । କେବଳ କେତେକଙ୍କ କୋଠା ଉପରୁ ବିଜୁଳିବତୀ ଝାପସା ଝାପସା ହୋଇ ଜାଜ୍ୱଲ୍ୟ ଦେଖାଯାଉଛି । ଏତେ ବଡ଼ ସହରଟାରେ ଜନ ସମାଗମ ନାହିଁ । ସେ ନିସ୍ତବ୍ଧ ଭେଦ କରି ଚାଲିଛନ୍ତି ତିନି ପ୍ରାଣୀ ପଛକୁ ପଛ ।

ଜୀବନ ଏବଂ ନବ ଭାବୁଛନ୍ତି, "କୁଆଡେ଼ ଯାଉଛନ୍ତି । କବର ଜାଗା ! କଣ ଯେ ସେଠାରେ ଭୀଷଣ ଜନ୍ତୁ ଅଛି । ସେଠାକୁ ଗଲେ ଅଣି ପାରିବେ ନା ? ଯମାଳୟ ନୁହେଁ ତ ? ରେଖା କଣ କରୁଥିବ । ଜମିଦାର ବଦମାସ୍ ତା ଉପରେ ଅତ୍ୟାଚାର କରୁ ନ ଥିବ ତ ? ତାର ଅବସ୍ଥା ଯେ କଣ ହେବଣି ! କାନ୍ଦୁଥିବ କି ମରି ଯିବଣି ! ନ ଖାଇ ନ ପିଇ ଆମକୁ ଖୋଜି ଖୋଜି ଶୁଖି ଯିବଣି ବୋଧହୁଏ । ଆମକୁ ଏ ଛଦ୍ମବେଶରେ ଦେଖି ଚିହ୍ନି ପାରିବ ତ ? କିପରି ବା ଚିହ୍ନାଦେବୁ ? କରିବୁ ବା କଣ ? ଶେଷକୁ "ଆମକୁ ମରିବାକୁ ହେବ । ହଉ, ଭଗବାନଙ୍କର ଇଚ୍ଛା ।"

ହଠାତ୍ ସେମାନଙ୍କର ଗତି ବନ୍ଦ ହୋଇଗଲା । ଦେଖିଲେ ମ୍ୟାନେଜର ଗୋଟିଏ ଭଙ୍ଗା ଘର ପାଖରେ ଠିଆ ହୋଇ କବାଟ ବାଡ଼େଉଛି । ନବ ଜାଣି ପାରିଲା ଯେ ସେମାନେ ଠିକ୍ ସ୍ଥାନରେ ଆସି ପହଞ୍ଚିଛନ୍ତି ।

ଅଳ୍ପ ଅଳ୍ପ ବେଳ । ନୋଦ୍ଧଲେ ଖୁବ୍ ବଡ଼ । ହଠାତ୍ ଦ୍ୱାର ଖୋଲିବା ଶବ୍ଦ ଶୁଣାଗଲା । ଦୁଇବନ୍ଧୁ ଦେଖିଲେ ଜଣେ ବୁଢ଼ୀ ଆସି ମ୍ୟାନେଜରଙ୍କୁ ଡାକୁଛି । ମ୍ୟାନେଜର ଆମକୁ ଭିତରକୁ ଯିବାକୁ ଇଙ୍ଗିତ କରି ଭିତରକୁ ପଶିଲେ, ଆମେ ଦୁହେଁ ଭିତରକୁ ଗଲୁ । ଅନ୍ଧାର ବାଟ । ମ୍ୟାନେଜର ଟର୍ଚ୍ଚ ଜଳାଇଲେ ।

ଧକ୍କା ଗଲା । ଜଣକ ଛଡ଼ା ଦୁଇଜଣ ଏକା ଥରେକେ ସେ ବାଟେ ପଶି ପାରିବେ ନାହିଁ । ଆଗରେ ମ୍ୟାନେଜର, ମଝିରେ ଦୁଇବନ୍ଧୁ, ପଛରେ ବୁଢ଼ୀ । ଏହିପରି କିଛି ବାଟ ଗଲାପରେ ଆଉ ଗୋଟିଏ ଗଳି ପଡ଼ିଲା । ଠିଆ ହୋଇ ଯାଇ ହେବନାହିଁ । ମୁଣ୍ଡ ନୁଆଁଇ ନୁଆଁଇ ଚାଲିଲେ । ପୁଣି କିଛି ବାଟରେ ଆଉ ଗୋଟାଏ ଚକ୍କର । କଣାପଥରରୁ ଯେପରି ପଥର କଟାହୋଇ ତିଆରି ହୋଇଛି । କଳ୍ପନା ମନ୍ଦିରରେ ଏ କି ଜାଗା ! ଆମେ କଣ ଆଉ ବେଞ୍ଚିଟି ପଡ଼ିଥିଲୁ ।

ଯାହାହେଉ, ଏହି ସମୟରେ ମ୍ୟାନେଜର କହିଲେ, "ଗୁରୁଣ୍ଡି ଗୁରୁଣ୍ଡି ଆସ ।" ଧୈର୍ଯ୍ୟ ଧରି ସେମାନେ ଗୁରୁଣ୍ଡିଲେ । ଏହିପରି ପ୍ରାୟ ଥୋଡ଼ାଏ ବାଟ ଯିବାପରେ ଗୋଟାଏ କ୍ଷୀଣ ଆଲୋକ ରେଖା ଦେଖିବାକୁ ପାଇଲେ । ସେଠାରୁ ଚାଲି ଚାଲି ଯିବାକୁ ସୁବିଧା ହେଲା । ତାପରେ ସେମାନେ ଆସି ପହଞ୍ଚିଲେ ଗୋଟିଏ କୋଠରୀ ଭିତରେ । ଦୁଇ ଚାରି ଜଣ ଲୋକ ସେମାନଙ୍କ ଅପେକ୍ଷାରେ ଥିଲେ । ମ୍ୟାନେଜରଙ୍କୁ ଦେଖି ସେମାନେ ଉଠି ଠିଆ ହେଲେ ।

ମ୍ୟାନେଜର କହିଲେ, "ସବୁ ଠିକ ଅଛି ତ ?"

ଜଣେ କହିଲା, "ଅଜ୍ଞା ।"

ଏହାପରେ କେତୋଟା ଘର ଟପିଗଲେ । ସବୁ ପଥର କଟା ହୋଇ ତିଆରି ହୋଇଛି । ଅଦ୍ଭୁତ ପ୍ରକାରର ଘର ଗୁଡ଼ିକ । ସବୁ

ଘରେ ଛନ୍ଦୁଳବନ୍ତୀ । ଦୁଇବନ୍ଧୁ ଏତେ ସବୁ ବେଶୀ ଲୋକଙ୍କୁ ନ ଦେଖି ଆଶ୍ଚର୍ଯ୍ୟ ହୋଇଗଲେ । ବହୁତ ବାଟ ବୁଲି ବୁଲି ସେମାନେ ଆସି ଗୋଟିଏ ଖାଲି ଘରେ ପହଞ୍ଚିଲେ ।

ମ୍ୟାନେଜର କହିଲା, "ତୁମେ ଏ ଘରେ ରହ । ମୁଁ ଯାଉଛି, ଘଣ୍ଟାକପରେ ଆସିବି । ତୁମର ଖାଇବାପିଇ ସବୁ ପଠାଇ ଦେଉଛି ।" ଏହା କହି ମ୍ୟାନେଜର ଚାଲିଗଲା ।

ଦୁଇବନ୍ଧୁ ସେଠାରେ ପଡ଼ିଥିବା ଦୁଇଟି ଖଟ ଉପରେ ବସି ପଡ଼ିଲେ । ଘରଟି ଦୁଇଟି ଖଟ, ଦୁଇଟି ଟେବୁଲ ଏବଂ ଦୁଇଟି ଚୌକିରେ ପୂର୍ଣ୍ଣ । ଟେବୁଲ ଉପରେ ନାନାପ୍ରକାର ବହି ଥୁଆ-ହୋଇଛି । ଖଟ ଉପରେ ଭଲ ଗଦି ପଡ଼ିଛି ।

ଜୀବନ ଦ୍ବୀପର ଲୋକେ ବହୁ ମଜଲି ମଜଲିସରେ ଅଛନ୍ତି । ସେ ଉଠି କବାଟ ବାଟେ ବାହାରକୁ ଅନାଇଲେ । ଅନ୍ଧାରରେ କାହାରିକୁ ଦେଖିବାକୁ ପାଇଲେ ନାହିଁ । ଫେରି ଆସି ବସି ପଡ଼ିଲେ ।

ଏହି ସମୟରେ ଗୋଟିଏ ଲୋକ ଆସି ଦୁହିଁଙ୍କୁ ଖାଇବାକୁ ଦେଇଗଲା । ସେ ଖାଦ୍ୟର ବାସନାରେ ଘରଟି ମହକି ଉଠିଲା । ସେ ଖାଦ୍ୟ ଦେଖି ଦୁଇବନ୍ଧୁ ଆଶ୍ଚର୍ଯ୍ୟ ହୋଇଗଲେ । ଏପରି ଖାଦ୍ୟ ସେମାନେ ଜୀବନରେ କେବେ ଦେଖି ନାହାନ୍ତି କି ଖାଇ ନାହାନ୍ତି । ଏ ସବୁ ଦେଖି ଖାଇବାକୁ ମନ ହେଲେ ସୁଦ୍ଧା ଅନ୍ତର ଭିତରଟା ଜଳି ପୋଡ଼ି ଯାଉଥାଏ । ସେମାନେ ଭାବୁଥାଆନ୍ତି ଯେପରି ଏହାରି ଭିତରେ ଗୂଢ଼ ରହସ୍ୟ ଲୁକ୍କାୟିତ ରହିଛି । ଯାହାହେଉ ଭୋକ ତ ହେଉଥିଲା । ବାଧ୍ୟହୋଇ ଖାଇଲେ । ସିଗାରେଟ୍ ଖଣ୍ଡିଏ ଖଣ୍ଡିଏ ଜଳାଇ ବିଛଣାରେ ପଡ଼ିଗଲେ ଏବଂ ଲୋକଟି ବାସନ ନେଇ ଚାଲିଗଲା । ଏହି ସମୟରେ ମ୍ୟାନେଜର ଆସି ପହଞ୍ଚିଲେ । ତାଙ୍କ ବନ୍ଧୁ ଯାହା ଶୋଇଥିଲେ ଉଠି ବସିଲେ ।

ମ୍ୟାନେଜର କହିଲେ, "ଶୁଅ ଶୁଅ ଉଠିଲେ ଜାଣିବ ?" ଏତିକି କହି ଖଣ୍ଡିଏ ଚୌକିଉପରେ ବସି ପଡ଼ିଲେ ।

ପୁନର୍ବାର ମ୍ୟାନେଜର ଆରମ୍ଭ କଲେ । "ଦେଖ ସୁରବାବୁ ( ଜୀବନର ଛଦ୍ମନାମ ) ଏ ଘର ତ ତୁମର । ଏଥିରେ କୌଣସି କୁଣି-ଅଙ୍କର ଚଳିଲେ ହେବ ନାହିଁ । ସବୁ କାମ ନିଜ ନିଜ ହାତରେ କରିନେବ ବୁଝିଲ ? ମୁଁ ଜଣେ ଲୋକ ବନ୍ଦୋବସ୍ତ କରି ରଖିଛି । ସେ ସକାଳୁ ଆସି ତୁମକୁ ସବୁ ଦେଖାଇ ଦେବ । ସବୁ ସୁବିଧା କରାଇ ଦେବ । କିନ୍ତୁ ହୁସିଆର ହୋଇ ଚଳିବ । କୌଣସି ଥିଏ ଭୟ କରିବ ନାହିଁ । ମୁଁ ଆଜି ଯାଉଛି । ପୁଣି ଏତିକି ବେଳକୁ କାଲି ଆସିବି । କହି ମ୍ୟାନେଜର ଚାଲିଗଲେ । କୁଆଡ଼େ ଗଲେ ଏବଂ କାହିଁକି ଗଲେ ସୁର ବୁଝି ପାରିଲା ନାହିଁ ।

( ବର୍ତ୍ତମାନଠାରୁ ଜୀବନ ଏବଂ ନବଙ୍କୁ ତାଙ୍କର ନୂଆ ନାମ ଧରି ଡାକିବା । ଜୀବନର ନାମ ସୁର ଏବଂ ନବର ନାମ ନର । )

ସୁର କବାଟ ବନ୍ଦ କରିଦେଇ ଆସି ବିଛଣାରେ ପଡ଼ିଗଲା ।

ନର କହିଲା, "ଏଥର ଶୋଇବା । ଖୁବ୍ ନିଦ ମାଡ଼ିଲାଣି ?

ସୁର କହିଲା "ହେଉ" ।

କିନ୍ତୁ ତାହାର ଆଖିରେ ନିଦ ନାହିଁ । ସୁର ଭାବୁଛି, "ତାଙ୍କର ପରି କେତେ ସୁରଙ୍କ ଜୀବନ ଏହାରି ମଧ୍ୟରେ ନଷ୍ଟ ହୋଇ ଯାଉଛି ।" ସୁର ଭାବି ପାରିଲା ନାହିଁ । ମ୍ୟାନେଜର ବୋଧହୁଏ ଜମିଦାରଙ୍କ ଦକ୍ଷିଣ ହସ୍ତ । ସେ ବାହାର ଖବର ଭିତରେ ଏବଂ ଭିତର ଖବର ବାହାରେ ଦେଉଛନ୍ତି । ବାହାରୁ ଲୋକ ଆଣି ଭିତରେ ଯୋଗାଉଛନ୍ତି । ପୁଣି ସୁର ଭାବି ଚାଲିଲା "ମ୍ୟାନେଜର କହିଗଲେ ଯେ ଏହା ଭିତରେ ବହୁତ ଭୀଷଣ ପଦାର୍ଥମାନ ଅଛି । ଯାହାକୁ

ଦେଖିଲେ ମନୁଷ୍ୟର ଭୟ ହେବାର ସମ୍ଭାବନା ।” ଯଦ୍ୟପି ଭୟ ଲାଗେ, ତଥାପି ସୁଦ୍ଧା ସେ ଲୋମଶ ଗୁମ୍ଫାକୁ ଦେଖିବା ନିମିତ୍ତ ତାର ହୃଦୟ ବ୍ୟାକୁଳ ହୋଇ ଉଠିଲା । ସେ କଥା ସବୁ ଭାବି ଭାବି ତାହାର ଆଖିରେ ନିଦ ଆସିଲା ନାହିଁ ।

ସାହାନ୍ତ୍ରଆ ପହରକୁ ଟିକିଏ ଥଣ୍ଡା ଲାଗିବାରୁ ଦୁହିଁଙ୍କୁ ଟିକିଏ ନିଦ ଲାଗିଗଲା ।

ନଲର ଯେତେବେଳେ ନିଦ ଭାଙ୍ଗେ ସେତେବେଳେ ସେ ଘରକୁ ଅନାଇ ଦେଖିଲା, ନଅଟା ବାଜିଲାଣି । ସୁର ଉଠିନାହିଁ । ସେ ଯଉ ଘରକୁ ଡାକିଲା । ଗୁମ୍ଫାଅନ୍ଧକାର ! ବାହାରର ସୂର୍ଯ୍ୟାଲୋକ ମଧ୍ୟ ତା ଭିତରକୁ ପଶିପାରୁ ନାହିଁ । ଏ କପରି ସ୍ଥାନ ! ଏ କେତେବ କଅଣ ! ତା ମନରେ ପ୍ରଶ୍ନ ଉପରେ ପ୍ରଶ୍ନ ଉଠିଲା । ତାପରେ ଦୁଇ ବନ୍ଧୁ ଉଠି କବାଟ ଖୋଲିଲେ । ଦ୍ୱାର ନିକଟରେ ଜଣେ ବଳିଷ୍ଠକାୟ ବ୍ୟକ୍ତି ଭଲପୋଷାକ ପିନ୍ଧି ତାଙ୍କର ଅପେକ୍ଷାରେ ଠିଆ ହୋଇଛି । ସେ ଦୁଇବନ୍ଧୁଙ୍କୁ ଦେଖି କହିଲା, “ଆସନ୍ତୁ, ବାଥ୍‌ରୁମ୍‌କୁ ନେଇଯାଏ । ସେଠାରେ ଆପଣଙ୍କ ପାଇଁ ସବୁ ସୁବିଧା କରାଯାଇଛି । କବାଟକି ବନ୍ଦକର ଦୁଇବନ୍ଧୁ ଲୋକଟିର ପଛେ ପଛେ ଚାଲିବାକୁ ଲାଗିଲେ ।

—୬—

ବହୁତ ବାଟ ବୁଲି ବୁଲି ଶେଷରେ ବାଥ୍‌ରୁମରେ ଆସି ପହଞ୍ଚିଲେ । ଯେଉଁବାଟ ଦେଇ ଏମାନେ ଗଲେ, ସେ ବାଟରେ କୌଣସି ଗୋଟିଏ ଲୋକକୁ ନ ଦେଖି ଆଶ୍ଚର୍ଯ୍ୟ ହୋଇଗଲେ । ସୁର ଭାବିଲା, “କଣ, ଏତେବଡ଼ ଜାଗାରେ ଲୋକ ନ ଥାନ୍ତି ? ତାଙ୍କ-ଙ୍କର ସଂଖ୍ୟା କଣ କମ୍ ?” ଏସବୁ ଦେଖି ଦେଖି ଦୁଇବନ୍ଧୁ ଆଶ୍ଚର୍ଯ୍ୟ

ହୋଇଗଲେ । ସମ୍ଭବତଃ ଯେପରି ସେମାନେ ଅପି ଗୋଟିଏ ଅଣ୍ଟର୍ଯ୍ୟୀ ଦ୍ଵୀପରେ ପହଞ୍ଚିଛନ୍ତି ।

କିଛି ସମୟ ପରେ ସୁର ପଚାରିଲେ, "ଆପଣଙ୍କ ନାମ" ।

ଅର ବ୍ୟକ୍ତି କହିଲା, "ମୋ ନାମ ରବ ।"

ସୁର ପୁନର୍ବାର ପଚାରିଲେ, "ଏଠାରେ କାହିଁକି ରହୁଛ, ତୁମକୁ କିଏ ଆଣିଲା, କପରି ବା ଆଣିଲା କହିପାରିବ ?

ରବ ଗୁରୁଅଙ୍ଗୁଳି ସ୍ଵୀୟ ସୁରର ପାଟିରେ ହାତ ଦେଇ ଚୁପ୍ ଚୁପ୍ ହୋଇ କହିଲା, "ଏପରି ଭଲ ନାହିଁ । କେହୁ ଯେବେ ଶୁଣେ ତେବେ ମୋର ଆଉ ଏ ସଂସାରରେ ରହିବା କଷ୍ଟ ହୋଇଯିବ । ତୁମର ମଧ୍ୟ । ଅମର ଏଠାରେ ସେସବୁ କହିବାକୁ ମନା ।

ସୁର କହିଲେ, "କେବଳ ଜାଣିବାକୁ ଟିକିଏ ପଚାରିଲିନା !"

ରବ କହିଲା, "ଏଠାରେ ଯେ ଏସବୁ କଥା କାହାରିକୁ ପଚାରେ ତାର ଦଣ୍ଡ କଣ ଜାଣନ୍ତି ? ଶୂଳୀ ।"

ସୁର ଓ ନର ଦୁହେଁ ଚମକି ଉଠିଲେ ।

ରବ କହିଲା, "ତୁମେ ତୁମର କାମସାରି ଆସ । ତୁମ କୋଠରୀରେ ସବୁ କହିବ ।"

ରବ ବାହାରେ ରହିଲା । ଦୁଇବନ୍ଧୁ ଘରଭିତରକୁ ପଶିଲେ । ପାଇଖାନାର ମଧ୍ୟ ଭିତର ସୁନ୍ଦର ଭାବରେ ତିଆରି ହୋଇଛି । ଗୋଟାଏ ସ୍ଥାନରେ ପଥର କଟା ହୋଇଛି । ସେହିବାଟେ ପାଣିଆସି କୁଣ୍ଡରେ ପଶୁଛି ଏବଂ କୁଣ୍ଡତଳେ ଗୋଟିଏ ବଡ଼ କଣା, ସେଇଟି ଗୋଟାଏ ଟେପି ଦିଆ ହୋଇଛି । ଠିପିଟି ଖୋଲିଦେଲେ ପାଣି ସେହିବାଟେ ଚାଲିଯାଉଛି । କୁଆଡ଼େ ଯାଉଛି ତା କେହି ଜାଣନ୍ତି ନାହିଁ । ଉପରେ ବଜୁଳିବତୀ । ବ୍ରସ୍ ଏବଂ ସାବୁନର ଥିଆ-

ହୋଇଛି । ସାବୁନ୍, ଝରକାପ ସବୁ ସଜଡ଼ା ହୋଇ ନୂଆ ହୋଇଛି । ବାସନାତେଲ, ଅତ୍ତର ଅତ୍ତର କେତେକଥା ।

ଭୁବନ ଯାଉଛନ୍ତି, ତାଙ୍କୁ ସେପାଖରେ କେତେଗୁଡ଼ିଏ ସ୍ତ୍ରୀ ଲୋକଙ୍କ ପାଟି ଶୁଣାଗଲା । ଏ କଣ ! ଏଠାକୁ ସ୍ତ୍ରୀଲୋକ ଏତେ । ତାଙ୍କୁ ଅଟମ ଡାକ୍ତାରଙ୍କୁ ତ ଏ ଲଟେ ଦେଖୁ ନାହୁଁ । ତେବେ କଣ ସେପାଖରେ ସେମାନେ ଅଛନ୍ତି ! ସ୍ତ୍ରୀ ଲୋକଙ୍କପାଇଁ କଣ ଅଲଗା ଘର ଅଛି ? ଏମାନେ ଏଠାରେ କଣ କରନ୍ତି । ଏମାନଙ୍କୁ କଣ ଜମିଦାର ଜବରଦସ୍ତି ଧରି ଆଣିଛି ? କିନ୍ତୁ ସେପରି ତ ଜଣାପାଉ-ନାହିଁ । ଜଣାପାଉଛି ଯେପରି ଏମାନେ ସ୍ୱଇଚ୍ଛାରେ ଏଠାକୁ ଆସିଛନ୍ତି । ହସ ତ କଣ ଉଛୁଳି ପଡ଼ୁଛି ?

ହଠାତ୍ ଜଣକର ପାଟି ଶୁଭିଲା, "ଭୁଲିଗଲୁ ମାଧବୀ, ଆମେ ଏଠାରେ କେତେ ସୁଖରେ ଅଛୁ । ଦୁନିଆରେ ଜମିଦାର ବଡ଼ ଭଲ ମଣିଷ । ମୁଁ କଣ ଏସବୁ ଜାଣିଥିଲି । ଏସବୁ ଜାଣିଥିଲେ କେବେଠାରୁ ଆସି ସାରନ୍ତିଣି । ବାଲ୍ୟରେ ବିଜ୍ଞାନ ପଢ଼ିସାରି ଘରକୁ ଆସି ଦେଖେ ତ ବାପ, ମା ସମସ୍ତେ ମୃତ । ମୁଁ ନିସ୍ସହାୟା ଥିଲି । ହଠାତ୍ ଜମିଦାରଙ୍କ ସହିତ ମୋର ଦେଖା ହେଲା । ସେ ମୋତେ ଆପଣାର କରିନେଇ ଏଠାରେ ଆଣି ରଖିଛନ୍ତି । ମୁଁ ବିଜ୍ଞାନ ଜାଣେ ବୋଲି ବିଜ୍ଞାନଘରର ମାଲିକ । ଏତେ ପୁରୁଷଗୁଡ଼ାକ ଅଛନ୍ତି କେହି ସାହସ କରି କିଛି ପଦାର୍ଥ ତିଆରି କରୁନାହାନ୍ତି । ମୁଁ ବୋଲି ସିନା ଏତେ ଜିନିଷ ତିଆରି କରିସାରିଲିଣି । ଜମିଦାରଙ୍କର ଦୟା ଉପରେ ଖୁବ୍ ଧନ୍ୟ ।"

ମାଧବୀ କହିଲା, "ଅଚ୍ଛା, ସୁମିତ୍ରାଦେବୀ ତୁମେ ଯେଉଁ ଔଷଧଟା ତିଆରି କରିଥିଲ, ମତେ ସେଇଟା ଶିଖାଇଦେବ ?

ସୁମନ୍ତ କହିଲା, "ଯେଉଁ ଔଷଧଟା ଲଗାଇଲେ କଟା ଘା ସଙ୍ଗେ ସଙ୍ଗେ ଭଲ ହୋଇଯାଏ ନା, ତାହା ଶିଖାଇ ଦେବ ।

ଆଉ ଜଣେ କହିଲା, "ସୁମନ୍ତ ଜେଜେ ମଲେ ସେ ବିଷାକ୍ତ ବାଷ୍ପଟା କିଏ ଶିଖାଇ ଦେବ ତ ? ଯାହାକୁ ଶୁଙ୍ଘିଲେ ମନୁଷ୍ୟ ଏକ ଘଣ୍ଟାପର୍ଯ୍ୟନ୍ତ ବେହୋସ ହୋଇଯିବ ।"

ସୁମନ୍ତ କହିଲା, "ହଉ ହେଉ । ତୋର ସେଇଟା ବଡ଼ ଦରକାର ? ହଉ ଶୀଘ୍ର ଚାଲ । ଲାଇବ୍ରେରୀ ଖୋଲିବା ବେଳ ଗଡ଼ି ଯାଉଛି ।"

ଅଳ୍ପେ ଅଳ୍ପେ ସ୍ଥାନୀ ଲୋକମାନେ ଚାଲିଗଲେ । ଦୁଇବନ୍ଧୁଙ୍କର ଆଉ ଦେଖିବାକୁ ବାଟ ନ ଥିଲା । ସୁର କହିଲା, "ନର, ଆମ ଗାଁ ଜମିଦାର ପୁଣି ଏଣ୍ଡକ ବୁଦ୍ଧିଆ ? ବିଜ୍ଞାନ କାରବାର ଏଠାରେ ପୁଣି ଚଳାଇଛନ୍ତି । ତେବେ ତ ତାଙ୍କୁ ପାଇବା ମୁସ୍କିଲ ।

ନର କହିଲା, "ଏସବୁ କଣ ଜମିଦାର କରୁଛନ୍ତି, ତା ନୁହେଁ । ସେହି ହୋଟେଲ ମ୍ୟାନେଜରର ଏ ସବୁ କାମ । ଦେଖାଯାଉ । ଚାଲିଯିବା ।"

ଦୁଇବନ୍ଧୁ ବାହାର ଆସିଲେ । ରବି ସଙ୍ଗେ ପୁଣି ନିଜ କୋଠରୀକୁ ଫେରି ଆସିଲେ ।

ରବି ଗମ୍ଭୀର ହୋଇ କହିଲା, "ତୁମେମାନେ ଜଳଖିଆ କରିନିଅ, ମୁଁ ଆସେ, ସବୁ କହିବି ।"

ରବି ଚାଲିଗଲା । ନର ଏବଂ ସୁର ପୋଷାକ ବଦଳାଇଲେ । ଜଳଖିଆ କରିସାରି ଖଟ ଉପରେ ବସିପଡ଼ିଲେ ।

କିଛି ସମୟପରେ ରବି ଆସି ସେ ଘରେ ପହଞ୍ଚିଲା । ରବି ଆସି ଗୃହଅଙ୍କୁ ବୁଝି କବାଟ ଭିତରୁ ବନ୍ଦ କଲା ଏବଂ କଥା ଆରମ୍ଭ କଲା । ଦୁଇବନ୍ଧୁ ନିଶ୍ଚିନ୍ତ ମନରେ ଶୁଣିବାକୁ ଲାଗିଲେ ।

ରବି କହିବାକୁ ଲାଗିଲା, ତାର ବାପା ଖୁବ୍ ବଡ଼ ଲୋକ। ଲକ୍ଷ ଲକ୍ଷ ଟଙ୍କାର କାରବାର। ଦାସ ଦାସୀରେ ଭର୍ତ୍ତି। ତାର ବାପ, ମା ତଥା ଅଣା ନାମରେ ଏକମାତ୍ର ଭଉଣୀ। ବାପ, ମା ଗେଲବସର ଭବ ଦୁହିଁଙ୍କୁ ପାଠ ପଢ଼ାଇଲେ। ରବି ଫାଷ୍ଟକ୍ଲାସ ଏମ୍, ଏ ପାସ ଏବଂ ତାର ଅତି ଆଦରର ଭଉଣୀ ଅଣା ପାଶ୍‌କଲା ବି,ଏସ୍‌, ସି। ସେହି ବର୍ଷ ହଠାତ୍ ବାପା ମରିଗଲେ ହଇଜାରେ। କେବଳ ଘରେ ରହିଲେ ଏକା ମା। ଏହିପରି ସୁଖରେ ଦୁଃଖରେ କିଛି ଦିନ କଟିଗଲା। ଦିନେ ଅଣା କଲେଜରୁ ଆସି ମତେ କହିଲା, "ଭାଇ, ଆଜି ମୁଁ କଲେଜ ଗଲାବେଳେ ଏବଂ ଆସିଲାବେଳେ ଦେଖିଲି ମୋ ପଛରେ ଗୋଟାଏ ବ୍ୟକ୍ତି ସବୁବେଳେ ବୁଲୁଥିଲା। କିଛି ବିପଦ ଅଛି ବୋଧହୁଏ।"

"ସେ କିଛି ଜାଣିପାରିଲା ନାହିଁ ବିପଦ କଣ। ମୁଁ ଭଲରୂପେ ଜାଣି ପାରିଥିଲି, କଥା କିନ୍ତୁ ଗୁରୁତର। ତଥାପି ତାକୁ ଆଦୌ ଜଣାଇ ଦେଲି ନାହିଁ।"

ସେହିଦିନଠାରୁ ତାର ପଢ଼ାପଢ଼ି ବନ୍ଦ। ସବୁବେଳେ ତାକୁ ମୁଁ ଦୃଷ୍ଟି ଉପରେ ରଖିଥାଏ। ସେ ଯୁଆଡ଼େ ଯାଏ, ମୁଁ ତା ସଙ୍ଗରେ ଯାଏ। ଘରେ ମାଆଙ୍କୁ ଛାଡ଼ି, ପୂଜାରୀଙ୍କ ଜିମା ଦେଇ, ମୁଁ ଅଣା ସଙ୍ଗରେ ଥିବାରୁ ବୋଧହୁଏ କେହି ତାକୁ ଚିହ୍ନିଲେ ନାହିଁ। ଏହିପରି କିଛିଦିନ ଚାଲିଗଲା।

କିଛି ସମୟ ରବି କଥା ବନ୍ଦ କଲା। ହିର ପଚାରିଲା, "ତା ପରେ କଣ ହେଲା କହନ୍ତୁ।" ରବି କହିଲା, ନରେନ ଗୃହର ପୂଜାରୀଙ୍କ ବ୍ୟବହାର ବଡ଼ ଖରାପ ହେବାକୁ ଲାଗିଲା। କିନ୍ତୁ ମା

(ଗୋଟିଏ ଭଲ ଜିନିଷ ଚୋରି ଗଲା । କଅଣଟିଏ ବାହୁଡ଼ିଲେ ଶୁଣିଲେ ନାହିଁ । ସେଥିପ୍ରତି ମୁଁ କିଛି ନଜର ଦେଇ ନ ଥିଲି ।"

ସ୍ମୃତି ରବି କଥା ବନ୍ଦ କଲା ।

ନର କହିଲା, "ହିଁ କହନ୍ତଲେ ଚାହିଁବ, ଲୁହଣୀଙ୍କ ।"

ରବି ଆରମ୍ଭ କଲା, "ଅମାବାସ୍ୟା ରାତି, ସନ୍ଧ୍ୟା । ସନ୍ଧ୍ୟା ଦିନରୁ ଅବିଶ୍ରାନ୍ତ ବର୍ଷା ହେଉଥିଲା । ସେଦିନ ଗୋଟିଏ ଭଲ ସ୍ୱପ୍ନ ଥିଲା ମାରଦ ଥିଏଟରରେ ।

ଅଖା କହିଲା, "ଆଇ ସ୍ୱପ୍ନ ଦେଖିଯିବା ।" ମାଆଙ୍କ ଅବସ୍ଥା ଭଲ ନ ଥିଲା । ଏଣୁ ତାଙ୍କୁ ଛାଡ଼ିଦେଇ ଆମେ ଭଉଣୀ ଥିଏଟରକୁ ଦେଖିବାକୁ ଗଲୁ । ଅସ୍ସ ଅସ୍ସ ରାତି ଅଧ । ଜଣା ଗର୍ଜୁଛି । ବର୍ଷା ସମ୍ପୂର୍ଣ୍ଣରୂପେ ଛାଡ଼ି ନାହିଁ । ଝିପ୍ ଝିପ୍ କରୁଛି । ରାସ୍ତାରେ ଜନସମାଗମ ନାହିଁ । ଟ୍ୟାକ୍ସି ଭଡ଼ା ଚୁକ୍ତାଇ ଦେଇ ଘରକୁ ପଶିଲୁ । କିନ୍ତୁ ଦୁଆରେ ଆସି ପହଞ୍ଚିଲା ବେଳକୁ କପର ମାଡ଼ ମାଡ଼ ପଡ଼ୁଥାଏ । ଦେଖିଲି ଦାଣ୍ଡଘର ମେଲା, ଘରର ଭିତର ଅନ୍ଧକାର । ମନେ ବଡ଼ ଆଶ୍ଚର୍ଯ୍ୟ ଲାଗିଲା । ଭୟ ହେଲା ମଧ୍ୟ । ଅଣା ଉପରେ ମନେ ଜାକି ଧରିଲା । ମୁଁ ତାକୁ ଆଶ୍ୱାସନା ଦେଇ ଭିତରକୁ ପଶିଲି । ମା, ମା ବୋଲି ବହୁତ ଡାକିଲି । କିନ୍ତୁ କିଛି ଉତ୍ତର ପାଇଲି ନାହିଁ ।"

ରବିର ଆଖିରେ ଲୁହ ଦେଖାଗଲା । ପୁର ଓ ନର ବାଧ ପକାଇ କହିଲେ, "ହିଁ ରବିବାବୁ ତାପରେ କଣ ହେଲା ।"

ରବି ରୁମାଲରେ ଆଖିପୋଛି କହିଲା, "ଘୁରିବାରବାର କୁଆଡ଼େ ଗଲେ । ସନ୍ଦେହ ହେଲା । ଅଧିର ଭିତରକୁ ପଶିଲି । ଗୃହଅଙ୍ଗ ଖୋଜିଲି । କୌଣସିଠାରେ କାହାରିକୁ ପାଇଲି ନାହିଁ ।

ଶେଷକୁ ଉପରକୁ ଉଠିଲି । ଉପର ଶୋଇବା ଘର । ସେଇଁ ଘରେ ମା ସିଏ, ସେ ଘରେ ଉଡ଼ାଣ୍ଟ ମଧ୍ୟ ମେଲା । ଯାହା ଦେଖିଲି ମୋର ହୃଦୟ ଚମକି ଉଠିଲା । ମାଆର ବୁକୁରେ ଛୁରୀ, ପଲଙ୍କ ସାରା ରକ୍ତ । କେବଳ ରକ୍ତ । ଅଃ, ଦୁର୍ବଳ ସେ । ଏ ରକ୍ତ ଦେଖି ଚାଲି ଗଲି ମୋ ଉପରକୁ । ତାକୁ ଟେକି ନେଇ ମୋ ଗୋଡ଼ ଉପରେ ଶୁଆଇଦେଇ ପାଣି ଆଣିବାକୁ ଗଲି । ପାଣି ଆଣି ଦେଖେ ତ, ମୋ ପ୍ରାଣର ଭଉଣୀ ଆଉ ନାହିଁ । ସବୁ ଗଲା । ଝଟ୍ କରି ହୋଇ ଉଠିଲି । ଦେଖେ ତ ଜଣେ ଧଳା ଦୁଆର ମୁହଁରେ ପହଞ୍ଚିଛି, ସେ ଆସି ବସିଲା ପାଖରେ ମୋ ମୁଣ୍ଡରେ ପଟାଙ୍ଗ୍ ପଟାଙ୍ଗ୍ । ପଡ଼ିଗଲି ଭୂମି ଉପରେ । ବେହୋସ ।”

ରଥ ଆଖିରୁ ଦୁଇ ବୁନ୍ଦା ଲୁହ ବୋହି ପଡ଼ିଲା ।

ସୁଲ ଓ ନର ମଧ୍ୟ କାନ୍ଦି ପକାଇଲେ । ତାପରେ ତାହା ହେଲେ ବୋଧ ଶୋଧ ହେବାପରେ ରଥ ପୁଣି ଆରମ୍ଭ କଲା ।

ଯେତେବେଳେ ଚେତା ପାଏ, ଦେଖିଲି ଗୋଟିଏ ମନ୍ଦିର ଘରେ ମୁଁ ଶୋଇଛି । କଳା ପୋଷାକ ପିନ୍ଧି । ମୁଁ ପାଖରେ ଯେଉଁ ପାଞ୍ଚ କଳା ଲଢ଼ା ପୋଷାକ ପିନ୍ଧା ଭୟଙ୍କର ଲୋକଗୁଡ଼ାଏ । ମୋର ହୋସ୍ ହେବାର ଦେଖି ଜଣେ ତାଚ୍ଛଲ୍ୟ ହସ ହସି କହିଲା, ‘କ ରଥ ବାବୁ ବର୍ତ୍ତମାନ କପର ବୋଧ କରୁଛନ୍ତି । ନିଶ୍ଚିନ୍ତ ରହନ୍ତୁ । ଏଠାରେ କିଛି ମାତ୍ର ଅସୁବିଧା ହେବ ନାହିଁ । ତା କଥା ଶୁଣି ମୋର ଏପରି ରାଗ ଆସୁଥିଲା, ହାତରେ ଯଦି ପିସ୍ତଲ ଥାଆନ୍ତା ତେବେ ସେ ବଦମାସ ଆଉ ଜୀବନ ନ ନେଇ ଛାଡ଼ି ନ ଥାନ୍ତି । କିନ୍ତୁ ନିରୁପାୟ । ଭଉଣୀ ମୋର ଅଜୀବନ ବନ୍ଦୀ । ଯେତେବେଳେ ଫ୍ଲେଭର ଦେଖାଇ ମୁଖା ତାଙ୍କୁ ସେ ବଦମାସଟା ବନ୍ଧନର ସାର ନାହିଁ ।

ମୋର ଏଠାରେ ରହିବାର ଇଚ୍ଛା ନାହିଁ । କେବଳ ଖୋଜୁଛି ସୁଯୋଗ, ସୁବିଧା । ପାଇଲେ ପ୍ରତିଶୋଧ ନେଇ ଭଉଣୀ ସହ ଚାଲିଯିବ । ହଁ, ଅନ୍ତୁର ମଧ୍ୟ ଭଉଣୀ ସଙ୍ଗରେ ।

ଆଉ ଦୁଇଜଣ ବଳ ବାଳିକା ଅଛନ୍ତି । ଜଣକ ନାମ ରେଖା ଏବଂ ଅନ୍ୟ ଜଣଙ୍କ ନାମ ଲତା, ଏଠାର ବିଖ୍ୟାତ ସି. ଆଇ. ଡି. ଅଶୋକ ବାବୁଙ୍କ କନ୍ୟା । କିପରି ସେ ବଦମାସ୍ ସେମାନଙ୍କୁ ଆଣିଲା, ସେହି ବିଷୟ ଭାବି ଭାବି ମନେ ଆଶ୍ଚର୍ଯ୍ୟ ଲାଗୁଛି । ଏ ତିନି ଜଣ ତା ପାଖରେ ରାଜି ନୁହନ୍ତି ବୋଲି ସେ ସେମାନଙ୍କୁ ବଡ କଷ୍ଟ ଦେଉଛନ୍ତି । ବନ୍ଦୀକରି ରଖିଛି । ହଠାତ୍ ସ୍ୱର ଚାପି ପକାଇ ରବିଙ୍କୁ କୁଣ୍ଢାଇ ପକାଇ କହିଲା, "ମୁଁ ହିଁ ସେ ହତଭାଗୀର ଭାଇ । ମୋର ପ୍ରକୃତ ନାମ ଜୀବନ । କିନ୍ତୁ ଅମେ ନାମ ଲୁଚାଇ ଆଜି ତାଙ୍କୁ ରକ୍ଷା କରିବାକୁ ଏଠାକୁ ଆସିଛୁ । ଏ ଲୋକ ମୋର ବାଲ୍ୟ ବନ୍ଧୁ ନବକୁମାର । ସେ ମଧ୍ୟ ମୋର ସହଯାତ୍ରୀ, ଛଦ୍ମବେଶରେ । କଣ କରିବୁ କହ, ରବିବାବୁ, [illegible] ଭଉଣୀମାନଙ୍କୁ ଉଦ୍ଧାର କରିବୁ ।"

ରବି ଟେଁକ ଧରି କହିଲେ, "ବ୍ୟସ୍ତ ହୁଅନ୍ତୁ ନାହିଁ । ଧୈର୍ଯ୍ୟ ଧରନ୍ତୁ । ମୁଁ ଥିବା ପର୍ଯ୍ୟନ୍ତ ତୁମର କିଛି ଅନିଷ୍ଟ ହେବ ନାହିଁ । ମୁଁ ସବୁ ବିଷୟରେ ସାହାଯ୍ୟ କରିବି । କେବଳ ସୁଯୋଗ । ବୁଝିଲ ସୁବିଧାକୁ, ବୁଝିଲ ନବ ବାବୁ କେବଳ ସୁଯୋଗ । ଏ ବଦମାସ୍‌କୁ ଉପଯୁକ୍ତ ଶିକ୍ଷା ଦେଇ ଶରଜ୍ୟୋତ୍ସ୍ନାରେ ଭଉଣୀମାନଙ୍କୁ ନେଇ ଚାଲିଯିବା ନିଜ ନିଜ ଘରକୁ ।"

ତାପରେ କିଛିକ୍ଷଣ ସମସ୍ତେ ଚୁପ୍ ହୋଇ ବସି ରହିଲେ ।

ଶେଷକୁ ରବି କହିଲା, "ବର୍ତ୍ତମାନ ଆମେ ତାର ଅଧୀନ । ମତେ ତୁମମାନଙ୍କୁ ସବୁଆଡ଼ ବୁଲାଇ ଦେଖାଇ ସାରି, ସେ ଜମିଦାର ପାଖକୁ ନେଇ ଯିବାକୁ ହେବ । ତୁମେ ସବୁ ପଦାର୍ଥ ଭଲ ଭାବରେ ଦେଖିବ । ତୁମେ ଯାହା ସବୁ ଦେଖିଲ, ସେ ବିଷୟରେ ସେ ପ୍ରଶ୍ନ ପଚାରିବ । ତୁମେ ସବୁ ଠିକ୍ ଜବାବ କହିଲେ, ସେ ତୁମକୁ ତାର ପ୍ରିୟ-ପାତ୍ର ଭଳି ରଖିବ । ତା ପରେ ଦେଖିବା । ବୁଝିଲ ? ଏଥର ଆସ । ଜିନିଷ ଦେଖି ଭୟ କରିବ ନାହିଁ । ମତେ ଜାଣ ବୋଲି ଜଣାଇ ଦେବ ନାହିଁ । ଆସ ।"

—୭—

ତିନିହେଁ ରାସ୍ତାରେ ପଡ଼ିଲେ । କ୍ରମେ ବୁଲି ବୁଲି କିଛି ବାଟ ଗଲାପରେ ଗୋଟିଏ ଛୋଟ ଗଳି ପଡ଼ିଲା । ସେଥିରେ ବୁଲୁଣି ବୁଲୁଣି ବୁଲିଲେ । କିଛିବେଳ ଏହିପରି ଗଲାପରେ ଗୋଟିଏ ପ୍ରଶସ୍ତ ରାସ୍ତା ପଡ଼ିଲା । ତାର ଦୁଇ ପାଖରେ ଘର, କିନ୍ତୁ ସେ ଘରେ କେହି ଥିବା ପରି ଜଣାପଡ଼ୁ ନ ଥିଲା । କବାଟ ଝରକା ଏକାବେଳକେ ପଥର ସଙ୍ଗରେ ଲଗି ରହିଥିଲା ।

ରବି କହିଲା, "ଏଥିରେ ବଦମାସ୍ ଯେଉଁ ଲୋକ ଅଛନ୍ତି ସେମାନେ ଥାଆନ୍ତି ।"

ଘର ଗୁଡ଼ିକ ପାର ହେବାପରେ ଆଉ ଗୋଟିଏ ଗଳି ପଡ଼ିଲା । ସେଠାରେ ଜଣେ ଭୀମକାୟ ଲୋକ ବର୍ଚ୍ଛାଟିଏ ଧରି ଠିଆ ହୋଇଥିଲା । ରବିକୁ ଦେଖି ମୁଣ୍ଡ ନୁଆଁଇ ପ୍ରଣାମ କଲା ଏବଂ ବାଟ ଛାଡ଼ି ଠିଆ ହେଲା ।

ଏମାନେ ପୁଣି ଆଗେଇଲେ । ସେଇଟା ପାର ହେବା ପରେ ଆଉ ଜଣେ ଜଗୁଆଳକୁ ଭେଟିଲେ । ସେ ମଧ୍ୟ ସେହିପରି ବାଟ

ବାଟ ଗୁଡ଼ ଦେଖା । ସେମାନେ କିଛି ଦୂର ଅଗେଇଛନ୍ତି କି ନାହିଁ, ଭୟଙ୍କର ଶବ୍ଦ ଏବଂ କରୁଣ ଚିତ୍କାର ଶୁଣାଗଲା ।

ରଞ୍ଜ ସେ କରୁଣ ଚିତ୍କାର ଶୁଣି କହିଲା, "ସୁରବାବୁ ଦେଖିବେ ଅସନ୍ତୁ ଶୂଳୀ ଦିଆଯାଉଛି ।"

ସୁର କହିଲା, "କାହାକୁ ? କାହିଁକି ?"

ରଞ୍ଜ ହଠି ହସି କହିଲା, "କାହିଁକି ? ଜମିଦାରଙ୍କ ବିପକ୍ଷରେ କେହି ଜଣେ ଉଠିଥିବ ବୋଲି ଏବଂ ସେ ଜଣକ ଏହି ଦଳ ମଧ୍ୟରୁ ଜଣେ ।"

ସୁର ଦୁଃଖର ସହିତ କହିଲା, "ମତେ କ୍ଷମା ଦେବେ ରଞ୍ଜବାବୁ । ମୁଁ ସେ ମୃତ୍ୟୁ ଦେଖି ପାରିବି ନାହିଁ । ଓଃ ! ଏହା ପୂର୍ବରୁ ମୋର ମୃତ୍ୟୁ ହେଲା ନାହିଁ କାହିଁ ?"

ନର କହିଲା, "ଧର୍ଯ୍ୟ ଧର ସୁର ଭାଇ" ।

ତା ପରେ ସମସ୍ତେ ପୁନର୍ବାର ଅଗେଇଲେ । କରୁଣ ଚିତ୍କାର ହଠାତ୍ ବନ୍ଦ ହୋଇଗଲା ।

ନର ଉତ୍କଣ୍ଠା ସହିତ ପଚାରିଲା, "କଣ ହେଲା ରଞ୍ଜବାବୁ ?"

ରଞ୍ଜ କହିଲା, "ଲୋକଟିର ମୃତ୍ୟୁ ହୋଇଯାଇଛି ।"

ନର ରାଗରେ କହି ଉଠିଲା, "ବଦମାସ୍ ଜମିଦାର ଏତେ କାପୁରୁଷ, ଏତେ ହୀନ । ନିଜର ଭାଇ ବନ୍ଧୁମାନଙ୍କୁ ପଶୁପରି ହତ୍ୟା କରୁଛନ୍ତି । ରଞ୍ଜବାବୁ ତୁମେ କିପରି ବଞ୍ଚୁଛ ?

ରଞ୍ଜ ହସି ହସି କହିଲା, "ଜମିଦାର ମତେ ଟିକିଏ ଭୟ କରେ । ମତେ ଦେଖିଲେ ତା ହାଡ଼ ଶୁଖାଇ ହୁଏ । ଏ ଦେଶି ଦୁଇ ଜଣ ମୋତେ ଜୁହାର କଲେ, ଏମାନଙ୍କୁ ମୁଁ ମୋର ତଳେ ରଖିଛି, ପ୍ରତିଶୋଧ ନେବାକୁ । ଅଚ୍ଛା, ଚାଲ ଡେର ହେଉଛି ।"

କିଛି ବାଟ ଗଲାପରେ ଘୁ ଘୁ ଗର୍ଜ୍ଜନ ଶୁଣାଗଲା । ବହୁତ ଲୋକଙ୍କର ପାଟି ମଧ୍ୟ ଶୁଣାଗଲା ।

ନର ପଚାରିଲା, "ଏ କଣ ?"

ରବି କହିଲା, "ରନ୍ଧନାଗାର ଏଠାରେ ସବୁ ପଦାର୍ଥ ତିଆରି ହୁଏ । ଏଥିରେ କେବଳ ସ୍ତ୍ରୀ ଲୋକମାନେ କାମ କରନ୍ତି । ଆମର ପ୍ରବେଶ ନିଷେଧ ।

ନର ପଚାରିଲା, "ଆମେ କଣ ଦେଖି ପାରିବୁ ନାହିଁ ?"

ରବି କହିଲା, "ହଁ ମୋତେ ଛାଡ଼ । ଭୁଲ ବୁଲେଇ ଅଣିବ । ଭୟ କରିବ ନାହିଁ ।"

ନର କହିଲା, "ଭୟ କରିବୁ ? ସ୍ତ୍ରୀ ଲୋକମାନେ ଯେଉଁଠାରେ କାମ କରୁଛନ୍ତି, ଆମର ସେଠାରେ ଭୟ । ବଡ଼ ହସ ମାଡ଼ୁଛି, ତୁମ କଥା ଶୁଣି ରବିବାବୁ ।"

ରବି କହିଲା, "ନା, ସେମାନଙ୍କ ହୃଦୟ ପାଷାଣ ହୋଇ ଗଲାଣି । ସ୍ତ୍ରୀ ଲୋକମାନେ ପୁଣି ଏପରି ହୁଅନ୍ତି ? ଏଇ, ଆମେ ତାର ଗୋଟିଏ ଦୁଆର ମୁହଁରେ ପହଞ୍ଚିଲୁ । ଏବାଟେ ପଶି ପଛ ବାଟେ ବାହାରି ଯିବା । ଉଛୁର ହେଉଛି । ପୁଣି ଇନ୍ଦିରାଙ୍କ ପାଖକୁ ଯିବାକୁ ହେବ । ଡେରି ହେଲେ ସର୍ବନାଶ । ଶୀଘ୍ର ଅସ । ସେତେବେଳକୁ ୧୧ଟା ବାଜୁଛି । ୧୨ଟାରେ ଇନ୍ଦିରାଙ୍କ ନିକଟରେ ପହଞ୍ଚିବାକୁ ହେବ ।

ତହିଁରେ ଦ୍ରୁତଗତିରେ ଭିତରକୁ ପଶିଲେ । ରବି ସହିତ ନୂତନ ବ୍ୟକ୍ତି ଦୁଇଜଣଙ୍କୁ ଦେଖି, ସୁମତୀ କଣ ତିଆରି କରୁଥିଲା, ଦଉଡ଼ି ଆସି କହିଲା, "ରବିବାବୁ ତୁମ ସଙ୍ଗରେ ଏ ନୂତନ ଅଭ୍ୟାଗତ ଦୁଇଜଣ କିଏ କେବେ ଅମଦାନୀ ହେଲେ ମ ? ଏଠାକୁ ତ କେବେ ଅଣ ନାହିଁ ?"

ରବ ସ୍ୱଗତରେ କହୁଲ, "ତୁମର କଣ ଅଖି ନାହିଁ, ଏସବ କଥା ଗୁଡ଼ାକ କହୁଛ ?"

ସୁମତୀ ହସି ହସି କହିଲା, "ମୁଁ ପଚାରୁଥିଲି ନା, ତୁମେ ଏସବ ସାଟି ଯାଉଛ କାହିଁକି ? ହଉ ହେଲା ଅମର ବଡ଼ ଦୋଷ । ହିଁ ଲୁଅଡ଼େ ଅସିଛ ?"

ରବ ଗମ୍ଭୀର ହୋଇ କହିଲା, "ଏ ଦୁଇଜଣଙ୍କୁ ବନ୍ଦୀଜନ-ଗାର ଏବଂ ତୁମ୍ଭମାନଙ୍କର ହାତ କୌଶଳ ଦେଖାଇବାକୁ ଅଣିଥିଲି ।"

ସୁମତୀ କହିଲା' "ହଉ ଦେଖାଅ ।"

ରବ ଡାକିଲା, "ଯୁବରାଜୁ ଅସ ।"

ଟିକିଏ ଅଗକୁ ଯାଇ କାନ୍ଥ ପାଖରେ ଗୋଟିଏ ଚକ ଲଗି-ଥିବା ଦେଖି ରବ କହିଲ, "ଏଇଟା କଣ କଣ ?"

ସୁର ଅଣ୍ଟର୍ଯ୍ୟ ହୋଇ କହିଲା, "ଜାଣିବୁ କପର ?"

ରବ କହିଲା, "ଏଇଟାକୁ ଘୁରାଇଲେ, ଏହି ବନ୍ଦୀନାଗାର ପେସ ପାଖରେ ଶୂଳୀ ଦେବା ଘର ଅଛି । ସେଥିରେ ଶୂଳୀ ଦିଆଯାଏ । ଶୂଳୀଘରକୁ ଗଲେ ସବୁ ଦେଖାଇ ଦେବ । ଏ ହିଁ ଡାଣ୍ଡୁ କଳଟାକୁ ମଧ୍ୟ ଦେଖି ଥାଅ ।"

ଯାହା ଦେଖିବାର ଥିଲ ବନ୍ଦୀନାଗାରରେ, ତା ସବୁ ଦେଖି ରବ, ସୁର ଏବଂ ଜର ଅଗେଇଲେ ।

ବନ୍ଦୀନାଗାର ପାଖରେ ଅଉ ଗୋଟିଏ କୋଠରୀ । ଜର ସେ ଘର ଦୁଆର ମୁହଁରେ ରକ୍ତଚିହ୍ନ ଦେଖି ପଚାରିଲା, "ଏ କଣ ?"

ରବ ଉତ୍ତର ଦେଲା, "ବର୍ତ୍ତମାନ ଯେଉଁ ଲୋକଟାକୁ ଶୂଳୀ ଦିଅଗଲା, ତା ଏହି ଘରେ ଏବଂ ଏ ରକ୍ତ ତାର ।"

ନରର ଦେହ ଉପରେ ସ୍ଥିର ପ୍ରବେଶ ଘଟିଲା । ସେ ଆଉ ପଛକୁ ଯିବାକୁ ପାରିଲା ନାହିଁ ।

ରବି କହିଲା, "ଡେରି କଲେ କଣ ଅଘଟଣ ବା କଣ ଯେ ପଡ଼ୁ । ଡେରି ହେଉଛି । ଆସ ।"

ସମସ୍ତେ ଭିତରକୁ ପଶିଲେ । ପଥର କାନ୍ଥ ଦେହରୁ ଖଣ୍ଡିଏ କଟା ଯାଇଛି । ଜଣେ ଲୋକ ଶୋଇବା ଭଳି ୭।୮ ହାତ ଉପରକୁ ଆଉ ଖଣ୍ଡିଏ ପଥର ଓହଳିଛି । ସେଥିରେ ଏ ମୁଣ୍ଡରୁ ସେ ମୁଣ୍ଡପାଏ ତୀକ୍ଷ୍ଣ ଛୁରୀ ପୋତା ହୋଇଛି । ସେଥିରେ ରକ୍ତ ଲାଗିଛି ।

ରବି କହିଲା, "ସେ ଯେଉଁ ପ୍ରଥମ ଚକଟା ଦେଖାଇଲି, ସେଇଟାକୁ ଘୁରାଇଲେ ଏଇଟା ତଳକୁ ଖସି ଆସିବ । ଯାହାକୁ ଶୂଳୀ ଦେବା କଥା, ତାକୁ ଏଥିରେ ଶୁଆଇ ଦିଆଯିବ ଜବରଦସ୍ତି କରି । ଅସ୍ତେ ଅସ୍ତେ ଏ ପଥରଟା ଆସି ଛୁରୀ ସହ ଏ ମଣିଷ ଉପରେ ପଡ଼ିବ । ସେଥିରେ ମନୁଷ୍ୟର ଅବସ୍ଥା ଯା ହୁଏ, ତାହା ସହଜରେ ଅନୁମାନ କରିବାର କଥା ।

ନର ଏ ସବୁ ଦେଖି କହିଲା, "ରବି ବାବୁ ଶୀଘ୍ର ଏ ଘରୁ ଚାଲ । ମୋ ଦେହ କଣ ହୋଇଯାଉଛି ।"

ରବି ସମସ୍ତଙ୍କୁ ସେ ଘରୁ ନେଇ ଆସିଲା ।

ତାପରେ ଆଉ ଗୋଟିଏ ଘର । ସେହ୍ନପର ଶୂଳୀ ଘର । ସେ ମଧ୍ୟ ସେହି ପ୍ରକାରରେ ତିଆରି । ଗୋଟିଏ କାନ୍ଥ ଦେହରେ ଖଣ୍ଡିଏ ପଥର ଲାଗିଛି । ଯାହାକୁ ଶୂଳୀ ଦିଆ ହେବା କଥା, ତାକୁ ଏଥିରେ ବାନ୍ଧି ଦିଆଯାଏ ଏବଂ ଦ୍ୱିତୀୟ କଳଟାକୁ ଘୁରାଇଲେ ଏ ପଥରଟି ଆଗକୁ ପଛକୁ ଘୁଞ୍ଚେ । ଏହିପରି ଅନ୍ୟ ଗୋଟିଏ ପଥର ଦେହରେ କେତେ ଗୁଡ଼ାଏ ତୀକ୍ଷ୍ଣ ଛୁରୀକା ପୋତା ହୋଇଥାଏ, ସେଥିରେ

ବାଷ୍ପେଇ ହୋଇଯାଏ ଏବଂ ସେ ଲୋକଟାର ଦେହ ଚୂନା ହୋଇ ଯାଏ ।

ବାସ୍ତବିକ ଏ ଭୟଙ୍କର ଜିନିଷ । ଏ ଗୁଡ଼ିକୁ ଦେଖିଲେ କାହାର ଛାତି ଝଲ୍ସି ନ ଉଠିବ ।

ହଠାତ୍ ସୁର ପଚାରିଲା, "ଅଚ୍ଛା, ରଣ ବାବୁ କେବେ ଏହା ଜାଣି ସୁଦ୍ଧା ଏଠାକୁ କାହିଁକି ଆସନ୍ତି ?"

ରବି ହସି ହସି କହିଲା, "କେହି ଜାଣନ୍ତି ନାହିଁ, ଯେପରି ତୁମ୍ଭେମାନେ ନ ଜାଣି ଏଠାକୁ ଆସିଛ । କେବଳ ପ୍ରଲୋଭନ । କେତେ ବେଳେ ଜବରଦସ୍ତ ।"

ସୁର ସହି ପାରିଲା ନାହିଁ । ସେ ଅସ୍ପଷ୍ଟ କଣ୍ଠରେ କହି ଉଠିଲା, "ଜମିଦାର ! ତୁ ଏତେ ଲୋକଙ୍କୁ ଏପରି ଭାବରେ ହତ୍ୟା କରୁଛୁ, ମୁଁ ଯଦି ତୋତେ ସେହିପରି ଭାବରେ ହତ୍ୟା ନ କରେ ତେବେ ମୋ ନାମ ଜୀବନ ନୁହେଁ ।"

ଦେଖୁଦେଖୁକୁ ସମସ୍ତେ ସେ ଘରୁ ବାହାରି ଆସିଲେଣି ।

ତାପରେ ଗୋଟିଏ ଗଳି ଆରମ୍ଭ ହେଲା । କଟି କଟି ଅନ୍ଧାର, ମୁହଁକୁ ମୁହଁ ଦେଖାଯାଉନାହିଁ । ରବି ଟର୍ଚ୍ଚ ମାରି ମାରି ଆଗକୁ ଚାଲିଲା ।

କେତେ ସିଧା ଏବଂ କେତେ ବଙ୍କା ଗଳି ଦେଇ, ସେମାନେ ଗୋଟିଏ ବଡ଼ କୋଠରୀ ନିକଟରେ ପହଞ୍ଚିଲେ ।

ମନ୍ତ୍ରବଳ ତାଲା ଗୃହ୍ୟାପଡ଼ିଛି । ରବି ତାଲା ଖୋଲି ଦେଲା ଏବଂ ସଙ୍ଗେ ସଙ୍ଗେ ଟର୍ଚ୍ଚ ଲାଇଟ୍ ଲିଭାଇ ଦେଲା ।

ଅନ୍ଧାରରେ ଜକ୍ ଜକ୍ ହୋଇ ବହୁତ ଗୁଡ଼ାଏ କଣ ଦେଖାଗଲା ।

ସୁର ପଚ୍ଛରିଲା, "ଏ ଗୁହାକ କଣ ଋଷବାକୁ ?"

ରବ ଠୋ ଠୋ ହୋଇ ହସି ଉଠିଲା ।

ସୁର ଆଶ୍ଚର୍ଯ୍ୟ ହୋଇ ପଚ୍ଛରିଲା, "ହସିଲ ଯେ ?"

"ବହୁ ସହ ବନ୍ଧ କରି ରହିଲ, ଆଉ କଣ ଚାହଁବ ।"

ସୁର ପଚ୍ଛରିଲା ମୁଁ ତ କିଛି ବୁଝି ପାରୁ ନାହିଁ !"

ରବ ପୁନର୍ବାର ହସି କହିଲ, "ଠଗୀମାନଙ୍କ ଧନ, ସୁନାରୁପା ଟଙ୍କା ପଇସାରେ ସବୁ ପୂର୍ଣ୍ଣ । କେତେ ଠଗୀ ସ୍ତ୍ରୀଙ୍କର ଗହଣା, ଦାମିକା ପଦାର୍ଥ, ମୂଲ୍ୟବାନ ଶାଢ଼ୀ, ଲୁଗା ତୁଳ୍ଳାରେ ସବୁ ପୂର୍ଣ୍ଣ । ଆଉ ହସିବ ନାହିଁ କ'ଣ ଚାହଁବ ?

ସୁର ଏ ସବୁ ଦେଖି କହିଲ, "ତେବେ ଏହାକ ଗୋଲରେ ଏମାନଙ୍କ ସମାବେଶ ହେଉଛି ନା ?"

ରବ ମୁଣ୍ଡ ହଲାଇଲ ।

ତା ମଧ୍ୟରେ ଅଛି ଗୋଟିଏ ଘର । ଘରଟି ଖୋଲଗଲ ।

ନର ଏ ସବୁ ଦେଖି ଅବାକ୍ ହୋଇଗଲ ।

ଗୁଳି, ବାରୁଦ, ପିସ୍ତଲ, ଛୁରୀ, ମେସିନ୍ ପ୍ରଭୃତିରେ ଘରଟି ପୂର୍ଣ୍ଣ । ଏ ସବୁ ଦେଖିସାରି ରବ ହାତର ଘଣ୍ଟାକୁ ଅନାଇ ଦେଖିଲ ଆଉ ପୋଡ଼ଏ ମିନିଟ୍ ବାକି ଅଛି ।

ଆହୁରି ଗୋଟିଏ ଜିନିଷ ଦେଖିବାକୁ ହେବ ।

ସୁର ନରଙ୍କୁ ନେଇ ରବ ପୁନର୍ବାର ଅଗ୍ରସର ।

ପୁଣି ଅନ୍ଧାରରେ କେତେ ବାଟ, ଅବାଟ ହୋଇ ଆସି ପହଞ୍ଚିଲେ ଗୋଟିଏ ଖୁବ୍ ବଡ଼ କୋଠରୀ ଭିତରେ । ସେଠାରେ ସାଇଁଟା ଜଳୁଅଛି । ସମସ୍ତଙ୍କ ହାତରେ ତୀକ୍ଷ୍ଣ ଛୁରୀଟା ଏବଂ ପିସ୍ତଲ ।

ଭିତରେ ମନ୍ତ୍ରପାଠ ଶୁଣାଗଲା ।

ନର ପଚାରିଲା, "ଏ କଣ ରବି ବାବୁ ?"

ରବି କହିଲା, "ଭିତରକୁ ଆଗ ଆସ, ସବୁ ଦେଖିସାରି ତା ପରେ କହିବି ।"

ସମସ୍ତେ ଭିତରକୁ ପଶିଲେ ।

ଘରଟି ମସ୍ତବଡ଼ । ଆଲୋକରେ ଭରା । ଗୋଟିଏ କଡ଼ରେ ମସ୍ତବଡ଼ ପାଷାଣ ମୂର୍ତ୍ତି । ମୂର୍ତ୍ତି ଦେଖିଲେ ଜଣାଯିବ ସତେ କି ସେପରି ଜୀବନ୍ତ ପ୍ରତିମା । କି ଭୀଷଣ ରୂପ । ସିନ୍ଦୂର ଚନ୍ଦନରେ ମୂର୍ତ୍ତି ପୂର୍ଣ୍ଣ ହୋଇ ଅଦ୍ଭୁତ ବିକଟାଳ ଦେଖା ଯାଉଚି । ତଳୁ ତିନିହାତ ଉଚ୍ଚକୁ ବେଲ ପତ୍ର ଏବଂ ମନ୍ଦାର ଫୁଲ ପ୍ରଚୁରତରେ ପୂର୍ଣ୍ଣ ହୋଇ ଉଠିଛି । ଜଣେ ପୁରୋହିତ ବସି ହୋମ କରୁଛନ୍ତି । କାନ୍ଥର ଅନ୍ୟ କଡ଼ରେ ଗୋଟିଏ ମସ୍ତ ବଡ଼ ଖଡ୍ଗ ଠେସ ହୋଇଛି । ସେଥିରେ ସିନ୍ଦୁର ଦିଆହୋଇ ଦର୍ଶକମାନଙ୍କ ମନରେ ଭୟ ସୃଷ୍ଟି କରୁଛି ।

ଏ ସବୁ ଦେଖି ତିନିହେଁ ସେ ଘରୁ ବାହାରି ଆସିଲେ ।

ଆଉ ଦଶ ମିନିଟ ।

ଠିକ୍ ବାରଟା ବେଳେ ସେ ପହଞ୍ଚିଲେ ଟୁଙ୍ଗ୍ ନିକଟ ।

ରବି କହିଲା, "ଶୀଘ୍ର ଚାଲ । ଡେରି ହୋଇ ଯାଉଛି ।"

ତିନିହେଁ ପାଦକୁ ଚଞ୍ଚଳ କରିଦେଲେ ।

ରବି ଆରମ୍ଭ କଲା, "ଜମିଦାର ପ୍ରଭଞ୍ଜନ ସେ ମୂର୍ତ୍ତିଟାକୁ ପୂଜା କରେ ସକାଳୁ । ସେ ଆଜି ମଧ୍ୟ ପୂଜା କରି ଗଲେଣି ।

ସେ ଗୋଟାଏ କଣ ସାଧନା କରୁଛି । ପ୍ରତି ଅମାବସ୍ୟାରେ ସେ ନରବଳି ଦିଏ ନିଜ ହାତରେ, ଏହି ଖଡ୍ଗ ସାହାଯ୍ୟରେ । ଅବିବାହିତ କୁମାରୀ । ବୁଝି ପାରୁଛ ?"

ନର ପଚାରିଲା, "କାହିଁକି ?"

ରବି କହିଲା, "ତା ଉପରେ କହିବି ?"

ସୁରର ଆଖି ଜଳି ଉଠିଲା । କିନ୍ତୁ ପରିସ୍ଥିତିକୁ ଚାହିଁ ତାର କୋପ ଦମାଇ ଦେଇ କହିଲା, "ବଦମାସ୍ ଏପରି କାର୍ଯ୍ୟ କରୁଛନ୍ତି ଏଠାରେ ବସି ବସି ! ଅଚ୍ଛା । ନା, ନା, ଗରିବଙ୍କୁ ଏହା ଏକବାର ଅସହ୍ୟ । ମୁଁ ଯଦି ଏ ବଦମାସ୍ଙ୍କୁ ହାତରେ ପାଆନ୍ତି ତେବେ ତଣ୍ଟି ଚିପି ମାରି ଦିଅନ୍ତି ।

ରବି କହିଲା, "ଆମ୍ଭେମାନେ ଜମିଦାରଙ୍କ ନିକଟରେ ପହଞ୍ଚି-ଲଣି । ସେପରି ଆଉ କୁହନା । ହଁ ଆଉ ଗୋଟାଏ କଥା କହିବାକୁ ଭୁଲି ଯାଉଛି ।"

ନର ପଚାରିଲା, 'କଣ' ?

ରବି କହିଲା, "ଜମିଦାର ତୁମକୁ ଗୋଟିଏ ଗୋଟିଏ ପ୍ରଶ୍ନ ପଚାରିବେ । ତା ପରେ ପଚାରିବେ ମୁଁ ଯଦି ତୁମକୁ ବର୍ତ୍ତମାନ ଶୂଳୀ ଦେବାକୁ କହେ, ତୁମେ ପ୍ରସ୍ତୁତ ତ ? ତୁମ୍ଭେମାନେ ସେଥିରେ ରାଜି ହୋଇଯିବ । କାରଣ ଭୟ କଲେ ସେ ତୁମକୁ ଶୂଳୀ ଦେବ ।"

— ୭ —

ବାରଟା ବାଜିବାକୁ ଦୁଇ ମିନିଟ ଅଛି, ହଠାତ୍ ଏମାନେ ଯାଇ ଜମିଦାରଙ୍କ କୋଠରୀ ଭିତରେ ପଶିଲେ । ଜମିଦାରଙ୍କ କୋଠରୀ ଦେଖି ଏମାନେ ଆଶ୍ଚର୍ଯ୍ୟ ହୋଇଗଲେ । ବନ୍ଧୁକ-ବାଣ-ବନ୍ଧୁକ ଟଙ୍ଗାରେ ଘରଟି ପୂର୍ଣ୍ଣ । ତାଙ୍କ ଝମଝମ୍ ଗାଲିଚା ବିଛା ହୋଇଛି, ତା ଉପରେ ଗଦି ଚୌକିମାନ ପଡ଼ିଛି । ଜମିଦାର ବସିଛନ୍ତି ସବୁଠାରୁ ଉଚ୍ଚରେ ଏବଂ ଭଲ ଆସନରେ । ଦର୍ଗୁଣ୍ଠ ଗଣ ବସିଛନ୍ତି ତଳକୁ ଟିକିଏ ନିମ୍ନ ଆସନରେ । ସମସ୍ତେ କଳା ପୋଷାକରେ ଭୂଷିତ, କଟିରେ ତୀକ୍ଷ୍ଣ ଛୁରିକା ଝକ ଝକ୍ କରୁଛି ।

ରବି, ସୁର ଓ ନର ଯାଇ ସେଠାରେ ନିଜ ଆସନରେ ବସି ପଡ଼ିଲେ । କିନ୍ତୁ ସମସ୍ତ ଘରେ ଘଡ଼ିଏ ନିସ୍ତବ୍ଧ ହୋଇଗଲା । ୫, ୧୦ ମିନିଟ ପରେ ଜମିଦାର ସୁର, ନରଙ୍କୁ ହାତ ଠାରି ଡାକିଲେ । ସୁର, ନର ଥରେ ଜମିଦାରଙ୍କୁ, ଥରେ ଉପସ୍ଥିତ ଜନତାଙ୍କୁ ଏବଂ ଥରେ ରବି ଆଡ଼କୁ ଚାହିଁ ଜମିଦାରଙ୍କ ପାଖକୁ ଗଲେ ।

ଜମିଦାର ଆସନରେ ବସି ଗମ୍ଭୀର ନାଦରେ କହିଲେ, "ଦେଖ ସୁର ନର, ତୁମକୁ ମୁଁ ଗୋଟିଏ ପ୍ରଶ୍ନ ପଚାରିବି ।"

ଦୁହେଁ ଖୁବ୍ ଆଗ୍ରହରେ କହିଲେ, "ଗୋଟିଏ କାହିଁକି ଯେତେ ପଚାରି ପାରନ୍ତି ।"

ଜମିଦାର ପଚାରିଲେ, "ଆଚ୍ଛା, ଯାହା ସବୁ ଦେଖିଲ ତାହା ଠିକ ଠିକ ବର୍ଣ୍ଣନା କର, ଯେପରି ଲୋକେ ଶୁଣି ତୁମମାନଙ୍କ ବର୍ଣ୍ଣନାକୁ ପ୍ରଶଂସା କରିବେ ।"

ନର କହିଲା, "ଏଇ କଥା ତ — ବର୍ଣ୍ଣନା ଶୁଣନ୍ତୁ । ଦୁହିଁଙ୍କ ବର୍ଣ୍ଣନା ଶୁଣି ସମସ୍ତେ କହିଲେ, "ବେଶ୍ ଦେଖିଛନ୍ତି ବେଶ୍ ହୋଇଛନ୍ତି । ଆମର ଏହି ଭାଇବନ୍ଧୁ ଜନ୍ମଲ ଧନ୍ୟ ।"

ବର୍ତ୍ତମାନ କୁହ, ସେ ଜାନୁ କାହାକୁ ଦେଖି ପାରୁଛ ?" ଜମିଦାର ପ୍ରଶ୍ନ କଲେ ।

ସୁର, ନର ଦେଖିଲେ ଅଦ୍ଭୁତ ଗୋଟାଏ ମସ୍ତବଡ଼ ଖଡ୍ଗ । ଦେବୋତ୍ତ ଖଡ୍ଗଠାରୁ ଖୁବ୍ ବଡ଼ ଏବଂ ଅଦ୍ଭୁତ ତୀକ୍ଷ୍ଣ । ରକ୍ତରେ ଖଡ୍ଗଟି ଭୂଷିତ । କି ଭୟଙ୍କର ସେ ଦୃଶ୍ୟ ! ସୁର ଭାବିଲା, "ଏ ଖଡ୍ଗ ଆଉ ଆମ ମସ୍ତକରେ ପଡ଼ିବ ନାହିଁ ତ ?

ସେମାନଙ୍କର ଭାବନାକୁ ଭାଙ୍ଗି, ଜମିଦାର କହିଲେ, "ଦେଖି ପାରୁଛ ?"

ନର କହିଲା, "ଆଜ୍ଞା ହଁ" ।

"ମୁଁ ଯଦି କହେ ଟେକ ତା ତଳେ ରଖିବାକୁ, ରଖିବ ?" ଜମିଦାର କହିଲେ ।

କହୁ କହୁ ଦୁଇବନ୍ଧୁ ଦଉଡ଼ି ଯାଇ ତା ତଳେ ଟେକ ରଖିଲେ ।

ଜମିଦାର ସଙ୍ଗେ ସଙ୍ଗେ ଆସନରୁ ଉଠି ଆସି ଦୁଇ ବନ୍ଧୁଙ୍କୁ ଉଠାଇ ନେଇ ବାହୁରେ ଚାପି ଧରି କହିଲେ, "ତୁମେ ଦୁହେଁ ଆଜିଠାରୁ ମୋର ବନ୍ଧୁ ହେଲ । ବର୍ତ୍ତମାନ ତୁମର ବାସସ୍ଥାନ ଆଜି ସେତେଣେ ନୁହେଁ, ଏଣେ ।" ରଙ୍ଗାକୁ ଡାକି କହିଲେ, "ଏ ଦୁଇ ବନ୍ଧୁଙ୍କୁ ନେଇ ଯା, ତୋ ଘର ପାଖରେ ଯେଉଁ ଘରଟା ଖାଲି ଅଛି ସେଠାରେ ରହିବାକୁ ଦେ ।"

ତାପରେ ସଭା ଭଙ୍ଗ ହେଲା । ଏତେ ଲୋକ ମୁହୂର୍ତ୍ତକ ମଧ୍ୟରେ କୁଆଡ଼େ ଅଦୃଶ୍ୟ ହୋଇଗଲେ, ସୁର ନର ଜାଣି ପାରିଲେ ନାହିଁ ।

ତାପରେ ରବି ଡାକିଲା, 'ଆସ' । ଦୁଇବନ୍ଧୁ ଶୁଣିଲେ । ଘରର ଉତ୍ତର ପଟେ ଗୋଟିଏ ଦରଜା । ଦରଜାଟି ଖୋଲା ହେଲା । ଅନ୍ଧାର ଗଳି । ସଙ୍ଗେ ସଙ୍ଗେ ବତି ଭିତରେ କେଉଁଠି ଜଳି ଉଠିଲା । ସ୍ଥାନଟି ଆଲୋକମୟ ହୋଇଗଲା । ଗଳି ଭିତରେ ଥିବା ପାଣିରେ ଆଲୋକ ପଡ଼ି ଚକ୍ ଚକ୍ ଦେଖାଗଲା । ରବି କହିଲା, "ଭୟ କରନି ଆସ ।" ଗଳି ଭିତରେ ପାଦେ ପାଦେ ପାଣି ଏବଂ ପଙ୍କ ମଧ୍ୟ । ସେ ପସନା ବାଟେ ଯିବାକୁ ଇଚ୍ଛା ହେଉ ନ ଥିଲେ ମଧ୍ୟ ଯିବାକୁ ବାଧ୍ୟ ହେଲେ । ବେଙ୍ଗ ଗୁଡ଼ାକ ଏଣେତେଣେ ଲେସରଡ଼ ହେଉଥାନ୍ତି । କେଁ କଟର ଶବ୍ଦରେ କାନ ଅତଡ଼ା ପଡ଼ି ଯାଉଥାଏ । କି ପସନା, କି ଗନ୍ଧ ସେ ଜାଗା, ବଡ଼ ଅସହ୍ୟ । ଲଟେଇ

ପୁଣି ଟେଣ୍ଟ ଟେଣ୍ଟ ଘଣ୍ଟା । ପଡ଼ଦରେ ଫୁଟି ଯିବାର ଭୟ । ଦଳଦେଇ ଧୀରେ ଧୀରେ ଅଗେଇଲେ ସେଇ କବାଟଦମୟ ମୃଣ୍ମୟ ପଥରେ । ବହୁତ କଷ୍ଟରେ କିଛି ବାଟ ଅଧି ଯାଇବା ପରେ ଖରାପ ବାଟ ସବୁ ଗଲା । ଘଡ଼ା ଘଡ଼ୁ ଅନ୍ଧଅନ୍ଧ ହେଲା । ଅବଶେଷରେ କିଛି ବାଟ ଗ୍ଲାଇଲେ । ରବି ପଗ୍ଚାରିଲା, "ସୁବ୍ରବାବୁ ବେଖା ପାଖକୁ ଯିବ ?"

ସୁର ସେତେବେଳେ କଣ ଭାବୁଥିଲା କେଜାଣି, କିଛି ଶୁଣି ପାରିଲା ନାହିଁ ।

ରବି ପୁନର୍ବାର ପଗ୍ଚାରିଲା "କଣ କହୁଛ ସୁବ୍ରବାବୁ ?"

ସ୍ୱରର ହୋସ ହୋଇ ଆସିଲା, ସେ ପଗ୍ଚାରିଲା "କେଉଁ ଠିକି ?

ରବି କହିଲା, "ରେଖା ପାଖକୁ" ।

"ଏଁ ରେଖା !" ସୁର ଆଶ୍ଚର୍ଯ୍ୟ ହୋଇ ପଗ୍ଚାରିଲା ।

ରବି କହିଲା, "ହଁ ରେଖା ପାଖକୁ, ସେ ଏଇ ଜଗେ ଅଛି ।

ସୁର ଉଦ୍‌ବିଗ୍ନ ହୋଇ କହିଲା, "ମୋତେ ଶୀଘ୍ର ନେଇ ଗ୍ଲଲ ରବିବାବୁ । ମୋର ତାକୁ ଦେଖିବାକୁ ଖୁବ୍ ଇଚ୍ଛା ଅଛି, ଶୀଘ୍ର ଗ୍ଲଲ ।"

ରବି ଧୀରେ ଧୀରେ କହିଲା, "ଆଜି ନୁହେଁ ଦୁଇଦିନ ପରେ ମୁଁ ସବୁ ବ୍ୟବସ୍ଥା କରି ସାରେ କହିବି ।"

ସୁର ମୁହଁଟି ଶୁଖାଇ ଦେଲା, କାହିଁକି କଣ ? ଦେଖିଛି ବା କଣ, ଉପାୟ ଅଛି କଣ ? ବାଧ୍ୟ ହୋଇ ରବି କଥାରେ ସାଇ ହେଲା ।

କିଛି ବାଟ ଅଗିଲା ପରେ ରବି କହିଲା, "ଦେଖିଲ ତୁମେ ତୁହେଁ ଏ ଘରେ ରହିବ, ଆଉ ମୁଁ ଅନ୍ୟ ଘରେ ରହିବି ।"

ନର କହିଲା, "ସତେ ।"

ରବି କହିଲା, "ଆଉ କଣ ମିଛ ।"

ସୁର ନରଙ୍କୁ ସ୍ଥାନ ଦେଇ ରବି ତା କୋଠରୀକୁ ଚାଲିଗଲା । ସେଠାରେ ମଧ୍ୟ ଅଉ କେତେକ ଦସ୍ୟୁ ଥାନ୍ତି । ସେମାନେ ଦୁଇବନ୍ଧୁଙ୍କୁ ଦେଖି କହିଲେ, 'ନୂତନ ଆମଦାନୀ ସବୁ ।'

ରବି ସଗର୍ବରେ 'ହଁ' କରି ଚାଲିଗଲା ।

ସୁର ଏବଂ ନର ତାଙ୍କ କୋଠରୀକୁ ପଶିଲେ । ମଧ୍ୟଭଲ କୋଠରୀଟି । ଦୁଇଟି ଖଟ ପଡ଼ିଛି, ତା ଉପରେ ଗଦି । ଟେବୁଲଟିଏ ଗୋଟାଏ କଡ଼କୁ ପଡ଼ିଛି । ତା ପାଖରେ ଦୁଇଟି ମୂଲ୍ୟବାନ ଚେୟାର । ଘରଟିରେ ବିଜୁଳି ବତୀ ବିଜୁଳିପଙ୍ଖା ରହିଛି । ଟେବୁଲ ଉପରେ କେତେ ଖଣ୍ଡ ବହି ସଜା ହୋଇଛି । ଗୋଟିଏ ବଡ଼ ଥାଳରେ ଖାଦ୍ୟ ସଜା ହୋଇ ଥୁଆ ହୋଇଥିଲା । ଦୁଇ ବନ୍ଧୁଙ୍କୁ ଖୁବ୍ ଭୋକ ହୋଇଥିଲା । ବଡ଼ କ୍ଳାନ୍ତ ଲାଗୁଥିଲା । ଗଣ୍ଡେ ଗଣ୍ଡେ ଖାଇ ଦେଇ ଦୁଇ ବନ୍ଧୁ ଶୋଇ ପଡ଼ିଲେ ।

ଯେତେବେଳେ ରବିର ଡାକରେ ଦୁଇ ବନ୍ଧୁଙ୍କ ନିଦ ଭାଙ୍ଗେ ସେତେବେଳକୁ ସନ୍ଧ୍ୟା ୭ଟା । ଦୁଇବନ୍ଧୁ ମୁହଁ ଧୋଇ କିଛି ଜଳଖିଆ କଲେ । ରବି ସିଗାରେଟ୍ ଖଣ୍ଡେ ଖଣ୍ଡେ ବଢ଼ାଇ ଦେଇ କହିଲା, "ସୁର ବାବୁ ବର୍ତ୍ତମାନ ମିଟିଂକୁ ଯିବାକୁ ହେବ ।"

ନର ସିଗାରେଟ୍‌ର ଧୂଆଁ ଛାଡ଼ୁ ଛାଡ଼ୁ ପଚାରିଲା, "ଫେର କି ମିଟିଙ୍ଗ୍ ।"

ରବି କହିଲା, "ଦଳର ପ୍ରଚାର କାର୍ଯ୍ୟ । ଆଉ କଣ କେଉଁଠି ଚାଲି ତାହାର ଆଲୋଚନା ।"

"କଣ ବର୍ତ୍ତମାନ ?" ସୁର ପଚାରିଲେ ।

ରବି କହିଲେ, "ହଁ ବର୍ତ୍ତିମାନ । ଯେତେବେଳ ପର୍ଯ୍ୟନ୍ତ ଆମେ ତାଙ୍କ ଅଧୀନରେ ଅଛୁ, ସେ ପର୍ଯ୍ୟନ୍ତ ଆମେ ତାଙ୍କ କଥା ମାନିବାକୁ ବାଧ୍ୟ । କିନ୍ତୁ ଜାଣି ରଖ ସୁର ବାବୁ, ମୁଁ ତାର ପ୍ରତିଶୋଧ ଦିନେ ନା ଦିନେ ନେବି । ପ୍ରତିଶୋଧ ନ ନେଇ ମୁଁ ଏଠାରୁ ଯିବି ନାହିଁ । ସେ ମୋର କଣ ନ କରିଛି । ମୋର ସୁନ୍ଦର ପ୍ରାସାଦକୁ ଭାଙ୍ଗି ଚୁରମାର କରି ଦେଇଛି । ମୋର ସ୍ନେହମୟୀ ମାତାଙ୍କୁ ହତ୍ୟା କରିଛି, ପ୍ରାଣର ଭଉଣୀକୁ ହରଣ କରିଛି ଏବଂ ମୋତେ ଆଣି ରଖିଛି, ଚୋରମ କରି । ମୁଁ ଦିନେ ଏଇ ସବଳ ହାତ ଦୁଇଟିରେ ତାର ସବୁ ଅହଂକାର, ଲାଳସା, କାମ ପିପାସା ଧ୍ୱଂସ କରିଦେବି ।" ରବି ସ୍ୱରରେ ଗର୍ଜି ଉଠିଲେ ।

ସୁର ଆଶ୍ୱାସନା ଦେଇ କହିଲେ- "ଧୈର୍ଯ୍ୟ ଧର ରବି ବାବୁ ଅସ୍ଥିର ହୁଅ ନା, ତକଦୀରେ ମିଳ, ଏପରି ଗୋଟିଏ ବ୍ୟୂହ ରଚନା କରିବା, ଯେଉଁଥିରେ କି ତାର ସମ୍ବନ୍ଧ ଶିରଚ୍ଛେଦନ ପାଇଁ ଲୁପ୍ତ ହୋଇଯିବ । ବର୍ତ୍ତିମାନ ଚୁପ, ଡେରି କର କିଛି ଲାଭ ନାହିଁ ।

ତକଦୀରେ ବାହାରିଲେ ପୂର୍ବୋକ୍ତ ଘରକୁ ।

ଭେନୋଟି ଆସନ ଛଡ଼ା ଅନ୍ୟସବୁ ଦସ୍ୟୁମାନଙ୍କ ଦ୍ୱାରା ପୂର୍ଣ୍ଣ ହୋଇଛି । ରବି ପ୍ରଭୃତି ନିଜ ନିଜ ଆସନରେ ବସିଲେ ।

ସେ ଦିନ ହୋଟେଲର ମ୍ୟାନେଜରର ସଙ୍ଖ୍ୟା ବେଳକୁ ଆସି ଥାଏ । ସମସ୍ତେ ବସି ସାରିବା ପରେ ସେ ନିଜ ଆସନରୁ ଉଠି ଖଣ୍ଡିଏ କାଗଜ ଧରି ଗମ୍ଭୀର ସ୍ୱରରେ କହିଲେ, "ତୁମେମାନେ ଏଇଟା କଣ ଜାଣ ? ଏ ... ଗୋଟିଏ ଖବର କାଗଜ । ଏଥିରେ କଣ ଲେଖା ଅଛି ଜାଣ ? ... ତୁଏ ବେଡ଼ି ଜାଣ ନା, ତା ... ଲ ଦେବାକୁ ମୁଁ ଏଡ଼େ ତତ୍ପ... ଅଛି ।" ଏହା କହି ପଢ଼ିବାକୁ ଅ... ...ଲେ ।

# ରହସ୍ୟମୟ ଚୋରୀ

ଭାରତ ବିଖ୍ୟାତ ସିଆଇଡ଼ ଅଶୋକ ବାବୁଙ୍କ କନ୍ୟା ଲତା ଦେବୀଙ୍କୁ କିଏ ଚୋରୀ କରି ନେଇ ଯାଇଛି । ଗୁରୁଠା ବେଳେ ଗାର୍ଲସ୍କୁଲରୁ ଫେରୁଥିବା ବେଳେ ସହସା ଅନ୍ତର୍ଦ୍ଧାନ । କେହି ଖୋଜି ଆଣି ଦେଲେ ୫୦ ଟଙ୍କା ପୁରସ୍କାର ପାଇବେ ।

ବିଜ୍ଞାପନଟି ପଢ଼ା ସରିଲା । ଜଣେ ତା ଆସନରୁ ଉଠି ପଚାରିଲା, "ତାକୁ କିପରି ଆଣିଲ ମ୍ୟାନେଜର ସାହେବ ?"

ମ୍ୟାନେଜର କହିଲେ, "ମୁଁ ଅକବରକୁ ରିକ୍ସା ଖଣ୍ଡିଏ ଦେଇ, ରିକ୍ସାବାଲା କରି ପଠାଇଲି । ଆଉ କେତେ ଜଣଙ୍କୁ କିଛି କିଛି ଦୂରରେ ରଖାଇ ଦେଲି । ଅକବର ରିକ୍ସା ନେଇ ସେଠାରେ ଅପେକ୍ଷା କରି ରହିଲା । ଗୁରୁଠା ବାଜିଲା ପରେ ସ୍କୁଲ ଛୁଟି ହେଲା । ଅକବର ଏପରି ବେଶରେ ସଜିତ ହୋଇଥିଲା ଯେ, ତାକୁ ଦସ୍ୟୁ ବୋଲି କେହି ଜାଣୁ ନ ଥିଲେ । ଲତାଦେବୀ ଆସି ଫାଟକ ପାଖରେ ଠିଆ ହେଲା କ୍ଷଣି ଅକବର ଦୌଡ଼ି ଯାଇ କହିଲା, "ମା ଗାଡ଼ି ଦରକାର ?"

ଲତା ଦେବୀ ସଙ୍ଗେ ସଙ୍ଗେ ହଁ କରି ଦେଲେ । ତା ପରେ ଗାଡ଼ିରେ ବସି କହିଲେ ଚୌରଙ୍ଗୀ ଷ୍ଟ୍ରିଟ ।

ଗାଡ଼ି ଧାଇଁଲା ଏ ଗଳି ସେ ଗଳି ଦେଇ । ଗାଡ଼ି ଯେତେବେଳେ ଗୋଟିଏ ପଡ଼ିଆ ପାଖରେ ଆସି ପହଞ୍ଚିଲା, ସେତେବେଳେ ଲତା ଦେବୀ ଚିତ୍କାର କରି ଉଠିଲେ । କିନ୍ତୁ ତାଙ୍କର ଚିତ୍କାର ଶୁଣୁଛି କିଏ ? ନୀରବ ସ୍ଥାନରେ ସମସ୍ତଙ୍କୁ ନେଇ ମୁଁ ପହଞ୍ଚିଗଲି । ତାଙ୍କ ମୁହଁ ବାନ୍ଧି ଦେଇ । ଆଖିରେ ଅନ୍ଧପୁଟୁଲି ବାନ୍ଧି ଦେଲି ।

ଅଗଲୁ ତାରଷ୍ଟା ଲୁଗ୍ଗର ତଳ ପାଖରେ ରଖାଇ ଥିଲି । ସେଥିରେ ଧୂଅଇ ଏଠାକୁ ନେଇ ଆସିଲି । ବର୍ତ୍ତମାନ ଲତା ଦେବୀ ଅଛି ଏଠାରେ । ଅଶୋକ ବାବୁଙ୍କ ମଜା ଜାଣିଲୁ ଯିବ ଯେ । ଏତେ ବଡ଼ ରକ୍ଷୀଙ୍କ ସ୍ଥି ଅଇ ଓ ହୋଇ ନିଜର କନ୍ୟାକୁ ଉଦ୍ଧାର କରି ପାରିଲେ ନାହିଁ । ଦେଖିଲ ମୁଁ କିପରି ତାଙ୍କ ଆଖିରେ ଧୂଳି ପକାଇ ଦେଇ ଚାଲି ଆସିଲି । ହା, ହା, ହା ।”

କି ବିକଟ ସେ ହସ । ଶହ ଶହ ବୋମା ଏକାଠି ପଡ଼ିଲେ ଯେପରି ଶବ୍ଦ ହୁଏ, ମ୍ୟାନେଜରର ହସ ଗମ୍ଭୀର ପଥର ଘରେ ଠିକ୍ ସେହିପରି ପ୍ରତିଧ୍ୱନିତ ହେଲା ।

ସୁବ୍, ଜଣ ଭାବିଲେ ତାଙ୍କ ଜୀବନରେ ସେ ଏପରି ହସ କେବେ ଶୁଣି ନ ଥିଲେ ।

ଜମିଦାରଙ୍କର ବଜ୍ର ନିର୍ଘୋଷ ଶବ୍ଦ ଶୁଣାଗଲା, “ସାବାସ, ସାବାସ, ତା ନ ହୋଇଥିଲେ କି ତୁମକୁ ମୁଁ ଏ ଗୁରୁଦାୟିତ୍ୱ ଦେଇ ଥାନ୍ତି । ଅଚ୍ଛା, ବର୍ତ୍ତମାନ କଣ କରାଯିବ । ସେ ଫେରେ ଖୋଜା ଖୋଜି କରୁଛନ୍ତି କି ନାହିଁ ?”

ମ୍ୟାନେଜର ହସି ହସି କହିଲା, “ହଁ ପୋଲିସ ଏବଂ ଅନେକ ଲୋକ ଚେଷ୍ଟା କରୁଛନ୍ତି । ଆମ ହେଡ଼ କ୍ୱାର୍ଟରକୁ ଡିଟେକ୍ଟିଭ ପୁଲିସ ଆସିଥିଲେ, ଲତା ଦେବୀ ସେଠାରେ ଅଛନ୍ତି ଯେ ପାଇବେ । ଚୂନ୍ ସ୍ତୁପ ଜାନମୁଣ୍ଡ ଆଉଁସି ଫେରିଗଲେ ।

ଜମିଦାର ଉଠି ବସି ପୁନର୍ବାର କହିଲା, ସାବାସ, ସାବାସ । ବର୍ତ୍ତମାନ ସେ ଡିଟେକ୍ଟିଭ କିପରି ଅଛନ୍ତି ?

ଜଣେ ଦସ୍ୟୁ (ବୋଧହୁଏ ସେ ଜଣକ ଦ୍ୱାର ରକ୍ଷକ) ନିଜ ସ୍ଥାନରୁ ଉଠି ହାତ ଯୋଡ଼ି କହିଲା, “ଆଜ୍ଞା, ସେ କଥା ଆଜି ମଣିମା

କଣ କହିବ । ରେଖା ଦେବୀ ଏବଂ ଅଣା ଦେବୀ ନିଜ ନିଜ ସ୍ୱାମୀଙ୍କୁ ଝୁରି ଝୁରି କାଠକାଠ ପଡ଼ି ଗଲେଣି ଏବଂ ଲତା ଦେବୀ ତାଙ୍କୁ ମନେ ପୋଡ଼ି ସବୁବେଳେ କାନ୍ଦୁଛନ୍ତି । କେହି କିଛି ଖାଉ ନାହାନ୍ତି । କେତେବେଳେ ଦୁଧ ଟିକିଏ କେତେବେଳେ ବା ଫଳ ଦୁଇଟା ଖାଉଛନ୍ତି । କେତେବେଳେ ତିନିହେଁ ବସି କାନ୍ଦୁଛନ୍ତି, କେତେବେଳେ ଖାଲି ହସୁଛନ୍ତି । ସେମାନଙ୍କ ମୁହଁ ଦେଖିଲି ଷଣ୍ଢୀ ବଡ଼ ଭୟ ଲାଗୁଛି । ଶୀଘ୍ର ଏହାର କିଛି ପ୍ରତିକାର କରନ୍ତୁ । ନୋହିଲେ ତିନିହେଁ ଯାଇ ବୋଧହୁଏ ପାଗଳ ହୋଇ ଯିବେ ।" ଏହା କହି ସେ ବସି ପଡ଼ିଲା ।

ତା ପରେ ଜମିଦାର ଉଠି କହିଲେ, "ଅଚ୍ଛା, ମୁଁ ଆଜ ସେମାନଙ୍କ ପାଖକୁ ଯିବି । ରାତି ୧୨ଟା ବେଳକୁ ତୁ ଜାଗ୍ରତ ଥିବୁ ?"

ତା ପରେ ଆଜ ଏଣୁ ତେଣୁ ଅନେକ କଥା ପରେ ସଭା ଭଙ୍ଗ ହେଲା । ସମସ୍ତେ ଯେ ଯାହାର ରୁମକୁ ଚାଲି ଗଲେ । ରବି, ସୁର ଓ ନବ ତିନିହେଁ ଯାଇ ତାଙ୍କ ରୁମକୁ ଆସିଲେ । ଭିତରୁ କବାଟ ବନ୍ଦ କରି ଦେଇ ରବି କହିଲା, "ଦେଖନ୍ତୁ ସୁରବାବୁ ଆଜି ରାତି ୧୨ଟା ବେଳକୁ ଗୋଟାଏ କାମ ତୁମକୁ କରିବାକୁ ହେବ ।"

ସୁର ଆଗ୍ରହୀ ହୋଇ କହିଲା, "କଣ" ?

ରବି ଧୀରେ ଧୀରେ କହିଲା, "ତୁମେ ଲୁଚି ଲୁଚି ଡାକ୍ତର ଘରକୁ ଯାଇ ସାତ ନମ୍ବର ଆଲମାରିର ଉପରେ ଥାକର ଯେଉଁ ଔଷଧଟା ଥୁଆ ହୋଇଛି, ସେଇଟାକୁ ନେଇ ଆସିବ ?"

ସୁର ପଚାରିଲା, "କେଉଁ ଔଷଧ ?"

ରବି କହିଲେ, "କ୍ଲୋରଫାର୍ମ ।" ସେଥିରେ ଲେବୁଲ ମରା ହୋଇଛି । ଶୀଘ୍ର ଯାଇ ଆଣିବ । ଆମେ ତୁମ ଅପେକ୍ଷାରେ ବାହାରେ ଥିବୁ । ଜମିଦାର ତୁମ ଭଉଣୀଙ୍କ ପାଖରୁ ଫେରିଲେ ପରେ ଆମେ ଯାଇ ସମସ୍ତଙ୍କ ସଙ୍ଗେ ଦେଖା କରିବା । କିନ୍ତୁ ଯେପରି ଧୀର ସ୍ୱରରେ । କେହି ଯେପରି ଜାଣି ପାରିବେ ନାହିଁ । କ୍ଲୋରଫର୍ମ ଦେଇ ଲୋକଟାକୁ ବେହୋସ କରି ସେମାନଙ୍କ ପାଖକୁ ଯିବା । ଜମିଦାର ନିଶ୍ଚୟ ତୁମ ଭଉଣୀକୁ କଷ୍ଟ ଦେଉଥିବ । ତାଙ୍କଠାରୁ ଆମେ ସବୁ ଜାଣି ପାରିବା । ହଉ, ଚାଲ ତୁମକୁ, ହଁ ହୁସିଆର ହୋଇ ଯେପରି କାମ କରିବ ।"

ଏଇପରି କଥାବାର୍ତ୍ତା ହୋଇ ହୋଇ ନିଜ ରୁମ ପାଖରେ ପହଞ୍ଚି ଗଲେ । ତିନିହେଁ ତାଙ୍କ ପାଖରୁ ବିଦାୟ ନେଇ ନିଜ ନିଜ ରୁମକୁ ଚାଲିଗଲେ ।

ନିସ୍ତବ୍ଧ ରାତ୍ର, ସ୍ତବ୍ଧ ଜଗତ, ଘଣ୍ଟା ୧୨ଟା, ଚାରିଆଡ଼େ କଟି କଟି ଅନ୍ଧାର । ମୁହଁକୁ ମୁହଁ ଦେଖାଯାଉ ନାହିଁ । କଳା ପୋଷାକରେ ଭୂଷିତ ହୋଇ ଗୋଟିଏ ଲୋକ ପିସ୍ତଲ ଏବଂ ଟର୍ଚ୍ଚଟାଏ ନେଇ ଧୀରେ ଧୀରେ ଆଗେଇଲା । ପାଠକମାନେ ଜାଣି ପାରୁଥିବେ, ଲୋକଟା କିଏ । ସୁରଜିତ ଆଉ କେହି ନୁହନ୍ତି । ଶୟନାଗାରରେ ତାଲା ପଡ଼ିଛି । ସୁର ଯାଇ ତାଲାଟିକୁ କିଛି ସମୟ ପରୀକ୍ଷା କଲା । ତାପରେ ଉପର ପକେଟରୁ ଗୁଚ୍ଛ ବାହାର କରି ତାଲାରେ ଦେଇ ପରୀକ୍ଷା କରିବାକୁ ଲାଗିଲା । ଖୁବ ଅଳ୍ପ ସମୟ ଭିତରେ ତାଲାଟା ଖୋଲିଗଲା । ତାର ମନ ଆନନ୍ଦରେ ନାଚି ଉଠିଲା । ଚୋରଙ୍କପରି ଚାରିଆଡ଼କୁ ଚାହିଁ ସେ ଭିତରକୁ ପଶିଲା । ଟର୍ଚ୍ଚମାରି ସାତ ନମ୍ବର ଆଲମାରି ପାଖକୁ ଗଲା । ଅତି ସହଜରେ ଆଲମାରି

ଖୋଲିଲା । କ୍ଲୋରଫର୍ମ ନେଇ ନିଜରୁମକୁ ଫେରି ଆସିଲା । ଆଜି ଅଲିଭାଃ ଅନ୍ଧ ନିଜ ରୁମରେ ପଢ଼ୁଥିବାରୁ, ଗୋଟାଏ ବଙ୍ଗାଳୀଭାଷା ବ୍ୟସ୍ତ ଦେହରେ ଧକ୍କା ବାଜିଲା । ସେ ପାଟି କରି ଉଠେ, "କିଏ ହଇମାର ।"

କିନ୍ତୁ ସୁର ହଇଁ ନ ମାରି ତୁଣ୍ଡରୁ ଫେରି ଆସିଲା । ବୋଧହୁଏ ତାପାଖରେ ଆଲୁଅ ନ ଥିଲା । ସେ ଅନ୍ଧାରିଆ ବେଳକୁ ଦାହାକୁ ନ ପାଇ ମନକୁ ମନ କଣ ଗୁଡ଼ାଏ ଗପି ଗପି ଲୋଟିଗଲା । ସୁର ଦ୍ରୁତଗତିରେ ଆସି ତା ରୁମ୍‌ରେ ପହଞ୍ଚିଲା । ରବି ଏବଂ ନରି ତା ଅପେକ୍ଷାରେ ବସିଥିଲେ ।

ରବି ପଚାରିଲା, "କଣ ଆଣିଲ ।"

ସୁର ମୁହଁରେ ହସ ଫୁଟି ଉଠିଲା । ସେ ପକେଟରୁ ଔଷଧ କାଢ଼ି ରବି ହାତକୁ ଦେଲା ।

ରବି କହିଲା, "ଖୁବ୍ ବଡ଼ କାମ କଲେ ସୁରବାବୁ ।" ଔଷଧକୁ ଝୁଣ୍ଡି ଦେଖିଲା ଠିକ୍ ଗୋଟାଏ ବାକିଛି । ସୁରକୁ କହିଲା, "ଉପଯୁକ୍ତ ସମୟ, ଶୁଭ ଆଜି ତେଣିକି ଭରି ଲାଗୁ ନାହିଁ ।



ତନିହେଁ ଅଗପଛ ହୋଇ ଧୀରେ ଧୀରେ ଅଗେଇ ଚାଲିଲେ । ଭଗବାନଙ୍କର ଅସୀମ ଦୟାରୁ ସମସ୍ତଙ୍କ ଅଲକ୍ଷରେ ବିନା ବାଧାରେ ଯାଇଁ ବନ୍ଦୀଶାଳାରେ ପହଞ୍ଚିଲେ । ତଣ୍ଟବନ୍ଧୁ ସେମାନଙ୍କର ଭଉଣୀକୁ ଦେଖିବେ ବୋଲି ବ୍ୟସ୍ତ ହୋଇ ପଡ଼ିଲେ । କିନ୍ତୁ ବ୍ୟସ୍ତ ହେବାର ସମୟ ଏ ନୁହେଁ । ଛପି ଛପି ତନିହେଁ ଅଗେଇଲେ । ପହରୀ ନିଶ୍ଚିନ୍ତରେ ଦୁଆର ପାଖରେ ବସି ଢୋଳଉଥିଲା । ଜମିଦାର

ସେତେବେଳକୁ ଚାଲି ଗଲେଣି । ଏଥିପାଇଁ ତାର ଭାବନା କି ଦ୍ୱନ୍ଦ କିଛି ନ ଥିଲା । ନରହ ଖୁବ୍ ବଳ । ସେ ଔଷଧଟା ନେଇ ଡେଇଁ ପଡ଼ିଲା ପ୍ରହରୀ ଉପରକୁ । ତାର ବିଶାଳ ବାହୁରେ ଚିପି ଧରିଲା । ତାର ହଲ ଚଲ ହେବାର ଶକ୍ତି ନ ଥିଲା । ଔଷଧଟା ତାଡ଼ି ତା ନାକ ପାଖରେ ସଙ୍ଗେ ସଙ୍ଗେ ଦେଖାଇ ଦେଲା । ଚିତ୍କାର କରିବା ପୂର୍ବରୁ ପ୍ରହରୀ ଗାଢ ନିଦ୍ରାରେ ଢଳି ପଡ଼ିଲା । ନର ଚାବି ଲଗାଇ କବାଟ ଖୋଲି ଦେଲା । ବିଜୁଳିବତୀରେ ଅନ୍ଧାର ଘର ଆଲୋକିତ ହୋଇ ପଡ଼ିଲା ।

ଚାଣ ଦେଖୁଛନ୍ତି ସେମାନେ, ବ ମୂଲ୍ୟର ଲାଜ ଲଟିଛନ୍ତି । ପାଦେ ହେଲେ ଆଗେଇ ପିବାକୁ ବାହାର ଶକ୍ତି ପାଉନାହିଁ । ଛଅଟି କଟେଶାଗୀ ନିଜ ନିଜ ଖଟ ଉପରେ ଶୋଇଛନ୍ତି । ଶୁଖି ଶୁଖି କଣ୍ଠା ରହି ଗଲାଣି । ଗୋଟା ମୁହିଁ କଳା ପଡ଼ି ଯାଉଛନ୍ତି । ସମସ୍ତଙ୍କର ଆଖିରୁ ଲୁହ ବୋହୁ ବୋହୁ ତକିଆ ଓଦା ହୋଇ ଯାଉଛି । ଏ ବଦମାସ୍ ସେ ଜମିଦାର । ଏତେ ହୀନ, ଏତେ ନୀଚ, ନିଜର ହିତ-ମାନଙ୍କ ପ୍ରତି ଏଭ ବ୍ୟବହାର । କେଡ଼େ ମୂର୍ଖ ସେ । ତାର ପ୍ରତିଶୋଧ ନେବାକୁ ହେବ ଅଳ୍ପ ସମୟ ଭିତରେ । ସମସ୍ତଙ୍କ ମନରେ ଏଇ ଭାବ ଖେଳିଗଲା । ଅଳ୍ପ ସମୟ ଭିତରେ ଧ୍ୟାନ ନ ପାରିଲେ ପ୍ରହରୀ ଉଠି ଚିତ୍କାର କରିବ । ସମସ୍ତେ ଧରିପଡିବେ । ସବୁ ଜାଣି ପାରିବେ । ତାପରେ ସୃଷ୍ଟି ହେବ ମହାଭାରତର ପ୍ରଥମ ଅଧ୍ୟାୟ । ରକ୍ତର ବନ୍ୟା ଭାସିଯିବ ଏଇ କ୍ଷୁଦ୍ର କୁଟୀର ଭିତରେ । ସମସ୍ତଙ୍କ ଆଖି ଜଳି ଉଠିଲା । ନା, ଆଉ ହେଉ ବଳେ ଚଳିବ ନାହିଁ ।

ଗବର ଭାବରେ ରେଖା, ଆଶା ଏବଂ ଲତାର ନିଦ ଭାଙ୍ଗି ଗଲା । ସେମାନେ ଭାବିଲେ, "ବୋଧହୁଏ ଜମିଦାରଙ୍କ

ଅଞ୍ଚଳରେ ବଦମାସ୍ ମାନେ ଅସିଛନ୍ତି ତାଙ୍କ ସମ୍ପତ୍ତି ନଷ୍ଟ କରିବାକୁ । ସେମାନେ ଯାହା କରିବାକୁ ଉଦ୍ୟତ ହେଲବେଳେ ରବି କହିଲା, ସାହି କରନି, ଆମେ ତୁମର ଶତ୍ରୁ ନୋହୁଁ । ଦେଖିଲ, ଆମେ କିଏ । ଏହା କହି ତତ୍‌କ୍ଷଣାତ୍ ବେଶ ବଦଳାଇ ଦେଲେ । ଅଶା ତା ଭାଇକୁ, ରେଖା ଜୀବନକୁ ଏବଂ ନବବାବୁଙ୍କୁ ଦେଖି କୁଣ୍ଢାଇ ପକାଇଲେ । କି ମଧୁର ମିଳନ ଭାଇ ଭଉଣୀଙ୍କ ମଧ୍ୟରେ । ଆହା ! ଭଗବାନଙ୍କର କି ମଧୁର ଲୀଳା ।

ହଠାତ୍ ଲତା କାନ୍ଦି କାନ୍ଦି କହିଲା, "ମୋ ବାପା ।"

ରବି ହଠାତ୍ ତା ପାଟିରେ ହାତ ଦେଇ କହିଲା, "ଚୁପ କର, ବ୍ୟସ୍ତ ହୁଅନା । ଆମେ ଯେପରି ରେଖା ଏବଂ ଅଶାର ଭାଇ, ତୁମର ସେଇପରି ଭାଇ ।"

ନବ କହିଲା, "ନା, ନା, ତା ହେବ ନାହିଁ । ଲତା ମୋର ସାନ ଭଉଣୀ, ତୁମର ତ ଭଉଣୀ ଅଛି । କିନ୍ତୁ ମୋର ସେ ଭଉଣୀ ନାହିଁ ।"

ରବି କହିଲା, "ହେଉ, ହେଲା । ତୋର କଥା ହେଉ ।"

ଲତା ଦଉଡ଼ି ଆସି ନବର ଗୋଡ଼ ତଳେ ପଡ଼ିଯାଇ କାନ୍ଦିଲା, ଭାଇ ! ନବର ଦୁଇ ଆଖିରୁ ଦୁଇଧାର ଲୁହ ଗଡ଼ି ପଡ଼ିଲା । ସେ ତାକୁ ଉଠାଇ ନେଇ ଆଖିରୁ ଲୁହ ପୋଛି ଦେଇ କହିଲା, "ସୁନାଟା ପରା କାନ୍ଦନା ।"

ତାପରେ ଭାଇ ଭଉଣୀମାନଙ୍କ ମଧ୍ୟରେ କେତେତ କଥା ହେଲା । ନବ କହିଲା, ଆମେ ଜାଣୁ, ଲତା ତତେ ଏଠାକୁ କିପରି ଅଣା ଯାଇଛି । ଆମେ ଏହାର ପ୍ରତିଶୋଧ ନେବୁ । ସେ ଶହ ଶହ ଭଦ୍ର ଘରର ଝିଅମାନଙ୍କୁ ନଷ୍ଟ କରି ଦେଇଛି । ଯଦିଓ ତୁମେ ଏପରି

ସ୍ୱବରେ ଜାଲ ବିଛାଉଛ, ତଥାପି ତୁମେ ଅଜ୍ଞେୟ ! ତୁମେ ଅଛ ରହୁଛ ସେଇ ଜମିଦାରର ପାପ ଲାଳସାର ଖୁବ୍ ଦୂରରେ । ତୁମେମାନେ ଦେବୀ । ସଇତାନ କି କେବେ ଦେବୀମାନଙ୍କର ଅନିଷ୍ଟ କରି ପାରେ ? ଜମିଦାର ତୁମମାନଙ୍କର କିଛି କରି ପାରିବ ନାହିଁ ।”

ହଠାତ୍ ରବି କହିଲା, “ବେଶ୍ ତ ନବବାବୁ, ଆପଣ ବି ଗୋଟିଏ କବି ପାଲଟି ଗଲେଣି । ଆପଣଙ୍କ ଦ୍ୱାରା ଏସବୁ କାର୍ଯ୍ୟ କିଛି ହେବ ନାହିଁ । ବରଂ ଆପଣ ଯାଇ ବାହାରେ ଚର୍ଚ୍ଚା କଲେ ଖୁବ୍ ଶୋଭା ପାଆନ୍ତା ।”

ଏତେ ବିପଦ ମଧ୍ୟରେ ଥାଇ ମଧ୍ୟ ସମସ୍ତେ ହସି ଉଠିଲେ । କିନ୍ତୁ ତାହା କ୍ଷଣିକ ପାଇଁ ।

ତାପରେ ସମସ୍ତଙ୍କ ମଧ୍ୟରେ ବହୁତ କଥା ପଡ଼ିଲା । ଅଳ୍ପ ଅଳ୍ପ ସମୟ, ସୁହାସିନୀର ହୋସ୍ ଆସିଯିବ । ରବି ଯିବାକୁ ଚଞ୍ଚଳ ହେଲା । କିନ୍ତୁ ଏତେ ଦିନ ପରେ ଦେଖା । ଭଉଣୀମାନେ ଛାଡ଼ନ୍ତୁ ନାହାନ୍ତି । ଏଣେ ନ ଗଲେ ନ ହୁଏ ।

ସୁର ଉଠି କହିଲା, “ଆମେ ତ ତୁମମାନଙ୍କ ପାଖରେ ଅଛୁ । ଭୟ କାହିଁକି ? ଆମେମାନେ ସୁଯୋଗ ଖୋଜୁଛୁ, କେବଳ ସୁଯୋଗ ଆସିଗଲେ ସମସ୍ତେ ଏ ନରକ ପୁରୀରୁ ଖସିଯିବା ଏବଂ ଏ ବଦମାସଙ୍କୁ ମଧ୍ୟ ଉପଯୁକ୍ତ ଶିକ୍ଷା ଦେଇଯିବା । ହଁ ଆଉ ଗୋଟିଏ କଥା, ଆମେ ଏଠି ଅଛୁ ବୋଲି କେହି ଯେମିତି ଜାଣି ନ ପାରନ୍ତି । ଛଦ୍ମ ବେଶରେ ଆମେ ଏଠାରେ ଅଛୁ । ପୂଜା ଡାକୁ ସାଜି । ହଁ, ତୁମେମାନେ ନ ଖାଇ, ନ ପିଇ ନିଜର ଏତେ ସୁନ୍ଦର ଦେହକୁ ଏପରି କରି ସାରିଲଣି । ଏଥର ଭଲକରି ଖାଇବା ଆରମ୍ଭ କର । କିନ୍ତୁ ହୁସିଆର, ଜମିଦାର ଆସିଲେ ତା ପଛ

ଯେପରି ବ୍ୟବହାର କରୁଥିଲ ସେହିପରି କରିବ । ସେ ଯେମିତି ଆମର ଖେଳ କିଛି ଜାଣି ନ ପାରେ । ତୁମ୍ଭେ ଆଉ, ଆମେ ଯାଉଛୁ ।"

ହଠାତ୍ ପଛରୁ ଲତା ଜଣଙ୍କ ହାତ ଧରି ଟାଣି କହିଲା, "ଭାଇ ଜମିଦାର କ'ଣ କହିଗଲା ବର୍ତ୍ତମାନ ଜାଣ ?"

ପାଞ୍ଚ ଭାଇଙ୍କର ଷ୍ଟୁଲ ଯିବାକୁ ବସିଥିଲେ ପୁନର୍ବାର ଶୁଣିବାକୁ ଠିଆ ହେଲେ ।

ଲତା ଆରମ୍ଭ କଲା, "ଜମିଦାର କହିଲେ, ଆମେ ଭାଇମାନେ ଯଦି ଅମାବାସ୍ୟା ପୂର୍ବରୁ ତାର ଦାସୀ ହୋଇ ରହିବାକୁ ଅମଙ୍ଗ ହେଉ, (ସୁମନ୍ତ ପ୍ରଭୃତିଙ୍କ ପରି) ତେବେ ଆମକୁ ଅମାବାସ୍ୟା ଦିନ ଅଚ୍ୟୁତ ଗୋଟିଏ କିଶୋର ସଙ୍ଗେ ବଳି ଦେବ । ଆଜି ଏହା ପ୍ରତିଜ୍ଞା କରି ଯାଇଛି ।"

ସୁର ପଚାରିଲା, "ତୁମେ କଣ କହିଲ ?"

ଆଶା କହିଲା, ଆମେ କହିଲୁ,"ସେଦିନ ମରିବୁ ପଛେ ତାହା କେବେ ହେବ ନାହିଁ ।' ସେ ଏକବାରେ ରାଗରେ ଗମ୍‌ଗମ୍ ହୋଇ ପଳାଇଲା ।

ସୁର ହସି ହସି ଆଶାର ମୁଣ୍ଡ ସାଉଁଳେଇ ଦେଇ ଦେଇ କହିଲା, "ସତେ, ଅଛା ଏତେ ବଡ଼ ଦମାକ୍, ତା ପୂର୍ବରୁ ତା ଗର୍ବ ଆମେ ଭାଙ୍ଗି ଦେବୁ ଯେ । ହଉ, ତୁମେମାନେ ଥାଅ ଆମେ ଯାଉଛୁ ।" ଦ୍ୱାର ପାଖରେ ପହଞ୍ଚି କବାଟ ଲଗାଇ ଦେଲେ ଏବଂ ଚୁପ୍ ଚୁପ୍ ହୋଇ ପ୍ରହରୀ ଚେତା ପାଇବା ପୂର୍ବରୁ ନିଜ ନିଜ ରୁମକୁ ପଳାଇ ଆସିଲେ । ଭଉଣୀ ମଧ୍ୟ ସାନ୍ତ୍ୱନା ପାଇ ସେଦିନ ରାତିରେ ନିଶ୍ଚିନ୍ତରେ ଶୋଇଲେ । ପ୍ରହରୀ ଉଠି ଦେଖିଲା ଯେ କବାଟ ବନ୍ଦ ଅଛି । ସେ ଭାବିଲା ଯେ ସମସ୍ତେ ନିଶ୍ଚିନ୍ତରେ ଶୋଇଛନ୍ତି । ଅଜ

କିଛି ଜାଣି ପାରିଲ ନାହିଁ । କାରଣ ତାର ଆଉ କିଛି ମାନେ ନ ଥିଲ । ସେ ହୋ, ହୋ ହୋଇ ହସି ଉଠିଲେ । ତାର ହସ ପଥର ଖଣ୍ଡମାନଙ୍କରେ ବାଜି ପ୍ରତିଧ୍ୱନିତ ହେବାକୁ ଲଗିଲ । ସେ ପୁନର୍ବାର ଭୁଲାଇବାକୁ ଲଗିଲ ।

ନିଦ ଭାଙ୍ଗିଲ ବେଳକୁ ସକାଳ ହୋଇ ଯାଇଛି, ଯେଣୁ କର୍ତ୍ତବ୍ୟରେ ସେ ଲଗିଗଲେ ।

— ୯ —

ଏହାପରେ କିଛିଦିନ କଟିଗଲ । ସୁର, ନର ସେଠାରେ ଖୁବ୍ ଅଭ୍ୟସ୍ତ ହୋଇ ଗଲେଣି । ଗୃହ ଅଙ୍କ ଦେଖି ଗଲେଣି । ମସ୍ତବଡ଼ ଇଂଗା । ବହୁତ ଘର, ପଥର କଟାହୋଇ ହୋଇଛି । ସେ ସ୍ଥାନର ଦୁଆର ମୁହଁ ରହିଛି ସସ୍ତା ପାଖରେ । ସବୁଠି ଗୋଟିଏ ଜଙ୍ଗଲ ପାଖରେ ଅଗ୍ନାଅଗ୍ନ ବନସ୍ତ । ତା ଭିତରେ କେହି ଲୁଚିଲେ ଖୋଜି ପାଇବା ଅସମ୍ଭବ । ଶତ୍ରୁ ବାହାର ବାଟେ ଅସିଲେ ଜଙ୍ଗଲ ବାଟେ ପଳାଇ ଯାଇ ପାରିବ । ସେଇଠି ସୁଡ଼ଙ୍ଗ ଅଛି, ଷ୍ଟେସନ ପାଖରେ ଗୋଟିଏ ଘରକୁ । ଯେଉଁଠୁ ଷ୍ଟେସନଟା ଖୁବ୍ ନିକଟ । ଭିତରେ ଖୁବ୍ ଚଲଖି ବାମ ହୋଇଛି । ଠାଏ ଠାଏ ପର୍ବତ ପଛକୁ ସଛ କଟା ହୋଇଛି । ଶତ୍ରୁ ପଛରୁ ଅସୁଥିଲେ, ସେଇ କଟା ପଥର ତଳେ ଲୁଚିଗଲେ ଶତ୍ରୁ ଜାଣି ପାରିବ ନାହିଁ । ଜମିଦାର ବଡ଼ ଚାଲାକ । ଚଳାଇ ଯିବାକୁ ମଧ୍ୟ ବହୁତ ବାଟ ରଖିଛି, ବହୁତ ସୁବିଧା ।

ସୁର ନରଙ୍କର ସେଠାରେ ଥିବା ସ୍ତ୍ରୀ, ପୁରୁଷଙ୍କ ସଙ୍ଗରେ ଉତ୍ତମ ରୂପେ ପରିଚୟ ହୋଇ ଗଲଣି । ସମସ୍ତେ ଦୁଇ ବନ୍ଧୁଙ୍କୁ ଖୁବ୍ ଭଲ ପାଅନ୍ତି । ଏମାନଙ୍କ କାର୍ଯ୍ୟରେ ସମସ୍ତେ ଖୁସି ।

ମ୍ୟାନେଜରର ମନ ଭୁଲେ ମୋଟ । ସେ ସବୁବେଳେ ଦୁଇ ବନ୍ଧୁଙ୍କର ଖୁବ୍ ପ୍ରଶଂସା କରୁଛି । ଜମିଦାର ମଧ୍ୟ ସେ ପର୍ଯ୍ୟନ୍ତ ତାହାଙ୍କୁ ଚିହ୍ନିପାରି ନାହିଁ । ତଥାପି ତା ମନରେ ସନ୍ଦେହର ଛାୟା ଅଙ୍କି ହୋଇ ରହିଛି ।

ସେ ଭାବୁଛି, "ବାପା ମା ମୃତ, ଭଉଣୀ ହୃତ, ଜୀବନ ଜବ କଣ ଏହା ସହି ପାରିବେ ? ସେ ନିଶ୍ଚୟ ଆସୁଥିବେ, ଖୋଜୁଥିବେ ବହୁତ ନିଶ୍ଚୟ । ମୁଁ ଶୁଣିଥିଲି ଆମ ଗ୍ରାମକୁ ଯାଇଥିଲେ । ଆମ ଘରେ ପଶିଥିଲେ । କିଛି ପାଇଲେ ନାହିଁ । ପଳାଇ ଗଲେ । ତେବେ ଗଲେ କୁଆଡେ ? କଟକରେ କଣ ସ୍ଥିର ହୋଇ ବସିଛନ୍ତି ? ଅଚ୍ଛା, ସେ ଯଦି କିଛି ଜାଣିପାରି ଏଠାକୁ ଆସିଥିବେ, ତେବେ ପାଇବେ କିପରି ? "ପୁଣି ମନ ବଦଳି ଯାଏ ।" ଅସମ୍ଭବ, ଏପରି ସ୍ଥାନର ସନ୍ଧାନ ନେବା କଣ ସହଜ ହୋଇଛି । ଭାରତ ବିଖ୍ୟାତ ଡିଟେକ୍ଟିଭ ଇନ୍ସ୍ପେକ୍ଟର ଅଶୋକବାବୁ ଏହାଙ୍କୁ ଖୋଜି ପାଇ ନାହାନ୍ତି । ସେ ବା ପାଇବେ କିପରି ? ପୁଣି ମନରେ ଆଘାତ ଲାଗେ, ଅଶୋକବାବୁ ଜୀବନର ଖୁବ୍ ସାଙ୍ଗ । ସେ ଯଦି ଆସି ଅଶେଷ ବାବୁଙ୍କୁ ସାହାଯ୍ୟ ମାଗିଥାଏ, ଅଶୋକବାବୁ ତ ସହି ପାରିବେ ନାହିଁ । ଏଣେ ପୁଣି ତାଙ୍କ କନ୍ୟାର ଅନ୍ତର୍ଦ୍ଧାନ । ସମସ୍ତେ ମିଶି ଯଦି ବନ୍ଦୀ ଭାବରେ ଆସନ୍ତି, ତେବେ ତ ସର୍ବନାଶ । ମୁଁ କଣ କଲି ? କାହିଁକି ଏସବୁ କଲି ? ଜୀବନରେ ଗୋଟାଏ ବଡ ଭୁଲ କରିଛି । ନା ସମସ୍ତଙ୍କୁ ଛାଡି ଦେବି । ଜୀବନ ଏବଂ ଅଶୋକ-ବାବୁଙ୍କଠାରୁ କ୍ଷମା ମାଗିବି । ରବି ଏବଂ ଅଣାକୁ ମୋ ପୁଅ ଝିଅ କରି ରଖିବି । ମୋର କେହି ନାହିଁ, ମତେ ସେମାନେ କ୍ଷମା ଦେବେ ତ ? ନ ଦେଲେ ମଧ୍ୟ ମୁଁ ତାଙ୍କୁ କ୍ଷମା ମାଗିବି । କ୍ଷମା ନ-

ଦେଇ ମରିବ । ବେଶ୍ ଉତ୍ତମ, ସେହି ହେବ ମୋର ଉପଯୁକ୍ତ ଦଣ୍ଡ । ଉଃ । ବଡ଼ ବ୍ୟସ୍ତ, ହଠାତ୍ ମନ ବଦଳିପାରେ । କୁହୁକର ମାୟା ଲାଗି ଆସେ । ପୁଣି ଭାବି ଚାଲେ "ଅସମ୍ଭବ । ଜୀବନ ଅପେକ୍ଷାକାରୀଙ୍କୁ କେହି ଏ ସ୍ଥାନର ସନ୍ଧାନ ପାଇ ପାରିବେ ନାହିଁ, ଶତ ଚେଷ୍ଟା କରି ମଧ୍ୟ । ମୋର ଏତେ ସୁରକ୍ଷିତ ସୈନ୍ୟ, ବନ୍ଧନ, ବାଷ୍ପ ଏ କଣ ବୃଥା ହୋଇଯିବ । ଯଦି ଆସିଲେ ଉପଯୁକ୍ତ ଶିକ୍ଷା ଦେଇ ସେମାନଙ୍କୁ ଫେରାଇ ଦେବି । ଦିନେ ଯେପରି ଏଠାରେ ମୁହଁ ଦେଖାଇବାକୁ ଆସିବେ ନାହିଁ । ତିନୋଟି ହତଭାଗା ବାଳକ ସେମାନେ [illegible] ମୋର କଣ କରିବେ ?"

"ଅମାବାସ୍ୟା ଦିନଠାରୁ ସେମାନଙ୍କୁ ନିଶ୍ଚୟ ଦାସୀ କରି ରଖିବି । ମୋର ପ୍ରତିଜ୍ଞା ପୂର୍ଣ୍ଣ କରିବି । ଏ ଦୁର୍ଗ ଅଜେୟ । ଅସମ୍ଭବ ଜୀବନ, ଅସମ୍ଭବ ଅପେକ୍ଷାକାରୀ, ବୃଥାରେ ଏ ବଦମାସ୍ ପଛରେ ଲାଗିଛନ୍ତି, ପାରିବେ ନାହିଁ ।" ମୁଣ୍ଡ ଗୋଳମାଳ ହୋଇ ଉଠେ । ସଙ୍ଗରେ ଉଠି ଘଣ୍ଟା ବଜାଏ । ପ୍ରହରୀ ସଲାମ ଦିଏ । ହୁକୁମ ହୁଏ ମଦ ଏବଂ ନାଚ ପାଇଁ । ସଙ୍ଗେ ସଙ୍ଗେ ସବୁ ଚାଲିଆସେ । ମଦପିଆ ଚାଲେ ଏବଂ ଗୀତ ବାଦ୍ୟରେ ଘରଟି ପୂରି ଉଠେ । ଜମିଦାର ସ୍ୱର୍ଣ୍ଣପୁର, ଇନ୍ଦ୍ର ଭୁବନ, ଅପସରା ପରି ଦେଖୁ ଦେଖୁ ମଦ ନିଶାରେ ପଲଙ୍କ ଉପରେ ଢଳିଇ ପଡ଼େ । ସବୁ ବନ୍ଦ ହୋଇ ଯାଏ ।

ଠିକ୍ ସେତିକି ବେଳେ ସୁର ଭୂମଟିରେ ଏକୁଟିଆ ବସି ଭାବି ଚାଲିଛି ପୁରୁଣା କଥା ଗୁଡ଼ିକ । ଭାବି ଭାବି ତା ମନରେ ଭାରି ଘୃଣା ଲାଗେ । ସେ ଉଠି ଯାଇ ଅଣ୍ଡା ପାଣି [illegible] ପିଇ ପିଠ [illegible] ଗଣ୍ଡେ ଲଗାଇଲା । ଫେରିବା ପଥ [illegible] । ହୋଇ ଦେଖି [illegible] ଚାରିଆଡ଼ ଅନ୍ଧକାର । [illegible] ହାତର

ସ୍ପର୍ଶରେ ଚମକି ପଡ଼ିଲା । ପଛକୁ ଗୁଡ଼ି ଦେଖିଲା, ସୁମନ୍ତ ଠିଆ ହୋଇ ମୃଦୁ ମୃଦୁ ହସୁଛି । ହସର ଧ୍ୱନୀରେ ଏନ୍ଦେଇ ଯାଇ କହିଲା, "ତୁମେ କିଏଟେ ସୁମନ୍ତ ଦେବା ?"

ସୁମନ୍ତ ବିନା ନିମନ୍ତ୍ରଣରେ ଗୋଟିଏ ଚଉକି ଉପରେ ବସି ଯାଇ କହିଲା, "ବସନ୍ତୁ ନା, କହୁଛି ।"

ସୁର ଦେଖିଲା ନ ବସିଲେ ନ ଚଳେ । ବାଧ୍ୟ ହୋଇ ଟିକିଏ ବୁଝେଇ ହୋଇ ବସି କହିଲା, "ଏଥରକ ମୋ ପ୍ରଶ୍ନର ଉତ୍ତର ଦେଲେ ମୁଁ ଖୁବ୍ ଖୁସି ହୁଅନ୍ତି ।"

ସୁମନ୍ତ ହସି ହସି କହିଲା, "ଦୟା କରି ଅଉ ଥରେ ପ୍ରଶ୍ନଟା ପଚାରନ୍ତୁ ।"

ସୁର କହିଲା, "ଏତିକ ବୁଝିପାରୁ ନାହାନ୍ତି ? ଏଠାକୁ ଆସିବାର ଅଭିପ୍ରାୟ କଣ ?"

"ଓ ଏକଥା ? ବାସ୍ତବିକ, ଆସିଲେ କଣ କିଛି ଦୋଷ ଅଛି ? ଏଇ ଘରେ ବସି ବସି ଭଲ ଲାଗିଲା ନାହିଁ । ଚାଲି ଆସିଲି ଦି ଚାରି ପଦ କଥାବାର୍ତ୍ତା ହେବାକୁ । ଆପଣଙ୍କୁ ଯଦି ଖରାପ ଲାଗୁଛି, ତେବେ କୁହନ୍ତୁ । ମୁଁ ଚାଲିଯିବି ।" ସୁମନ୍ତ ଏତକ କହି ସୁର ଆଡ଼କୁ ଚାହିଁ ରହିଲା ।

ସୁର ଦେଖିଲା ଯେ ଚଟକ ଦେବାଟା ଭଲ ହେବ ନାହିଁ । ବରଂ କୌଶଳ କରି, ଏମାନଙ୍କ ପାଖରୁ କିଛି ଗୁପ୍ତ ଖବର ସଂଗ୍ରହ କରିବା ଦରକାର । ସେ ହସି ହସି କହିଲା, "ନା, ନା ଆସିଛ ଭଲ ଚାରିପଦ କଥାବାର୍ତ୍ତା ହୋଇ ଯିବ ।" ଅଚ୍ଛା ମୁଁ କବାଟଟା ବନ୍ଦ କରି ଦେଇ ଆସେ । ଯଦି କେହି କିଛି ଶୁଣେ କି ଦେଖେ.....

ସୁମତି ଦେହଟାକୁ ଛଡ଼ାଇ ନେଇ କହିଲା, "କେହି କିଛି ଭାବିବେ ନାହିଁ । ହଉ ଯଦି କହୁଚ କବାଟ ବନ୍ଦ କରି ଦେଇପାର । ମୋର କିଛି ଆପତ୍ତି ନାହିଁ ।"

ସୁର କବାଟ ବନ୍ଦ କରି ଦେଇ ସୁମତି ପାଖକୁ ଚାଲି ଆସିଲା । ତା ଆଖିରେ ସୁମତିର ରୂପ ସୁନ୍ଦର ଏବଂ ମନ ମୁଗ୍ଧକର ଦେଖାଗଲା । ସେ ସୁମତିର ସୁକୋମଳ କ୍ଷୁଦ୍ର ହସ୍ତଟିକୁ ଉଠାଇ ନେଇ କହିଲା, ସୁମତି ଦେବୀ ସତେ କଣ, ତୁମେ ମୋତେ ଭଲ ପାଅ ?

ସୁମତି ତାର ପାପ ଇଚ୍ଛାକୁ ଦମନ ନ କରି ମାଦସ୍ୱରରେ ସ୍ମିତ ଉପରେ ଅଜଣା ପଡ଼ି କହିଲା, "ତୁମେ ସିନା ବୁଝିଲ ହୃଦୟ ଚାଲୁଛ । କିନ୍ତୁ ପ୍ରଥମ ଦେଖାରେ ମୁଁ ତୁମର ହୋଇ ସାରିଛି ।

ସୁର ସୁମତିକୁ ଅତୁଳ ନିକଟକୁ ଭିଡ଼ି ଆଣି ତା'ର ସୁକୋମଳ ଗୋଲାପି ଅଧରରେ ଗୋଟିଏ ସରୁ ଚୁମ୍ବନ ଅଙ୍କି ଦେଇ କହିଲା, "ସତେ ସୁମତି ଦେବୀ ତୁମେ ମୋତେ ଏତେ ଭଲ ପାଅ ? କିନ୍ତୁ ମୁଁ ସ୍ୱପସ ଅନ୍ୟ ଚକ୍ଷୁରେ ତୁମକୁ ଦେଖୁଥିଲି । କ୍ଷମା ଦିଅ ।"

ସୁମତି ଆଖି ବୁଜି ଦେଇ କହିଲା, "ତୁମକୁ କ୍ଷମା, ପୁଣି ମୁଁ ଦେବି ତା ହୋଇ ନ ପାରେ । ତୁମେ ମତେ କ୍ଷମା ଦିଅ ।"

ସୁର ସୁମତିକୁ ଛାଡ଼ିଦେଇ ଖଟ ଉପରେ ବସିବାକୁ କହିଲା । ସୁମତି ବସିବା ପରେ ସୁର କହିଲା, "ତୁମର ଘରଆଡ଼େ ଅବାଧ ଗତି ନା ? ତୁମକୁ କେହି କିଛି କୁହନ୍ତି ନା । ତୁମକୁ ସନ୍ଦେହ ଭିତ୍ତି କରନ୍ତି ନାହିଁକି ?

ସୁମତି ହସି ହସି କହିଲା, "କେବଳ ବଜାର ନେଇ ଗୁଁ ।"

ସୁର ପଚାରିଲା, "ଅଚ୍ଛା ସୁମତି ଦେବୀ, ତୁମେ ଏଠାକୁ ନିଜ ଇଚ୍ଛାରେ ଆସିଛ କି ତୁମକୁ ଜବରଦସ୍ତ ଅଣା ଯାଇଛି ?

ସୁମନ୍ତ କଥାଟାକୁ ଏଡ଼ାଇଦେଇ କହିଲେ, "ଅଚ୍ଛା ସୁର ବା'ବୁ ଆପଣଙ୍କ ଘରେ କିଏ ଅଛନ୍ତି ?"

ସୁର ଦେଖିଲେ ସୁମନ୍ତ କଥା ଗୁଡ଼ାକ ଅନ୍ୟ ଆଡ଼େ ନେଉଛି । ସେ ଯଦି ପୁନର୍ବାର ସେ କଥା ପଚାରନ୍ତି, ତେବେ ସେ ସନ୍ଦେହ କରିବ । ଏଣୁ ସେ ହସି ହସି କହିଲେ, "କାହିଁକି ମୋର ତ ସମସ୍ତେ ଅଛନ୍ତି । ବାପ, ମା, ଭାଇ, ଭଉଣୀ ସମସ୍ତେ ତ ଅଛନ୍ତି । ମୁଁ ଏ କଥାତ ଆଗରୁ କହି ଦେଇଛି ।"

"ତେବେ ତୁମେ ଏଠାକୁ ଆସିଲ କାହିଁକି ?" ସୁମନ୍ତ ପଚାରିଲେ ।

ସୁର କହିଲେ, "ଆଉ ବା କଣ କରନ୍ତି । ପିତାଙ୍କର ଇଚ୍ଛା, କୂପ-ମଣ୍ଡୁକ ପରି ରହିବାକୁ । କିନ୍ତୁ ମୋର ତ ତା ଇଚ୍ଛା ନୁହେଁ ।"

କଟାକ୍ଷ ହାଣି ସୁମନ୍ତ କହିଲେ, "ତୁମର ଇଚ୍ଛା କଣ ?"

ସୁର ହସି ହସି କହିଲେ, "ମୋ ଇଚ୍ଛା ତୁମେ ଯେପରି ରହୁଛ ସେହିପରି ରହିବାକୁ । ଅଚ୍ଛା, ସୁମନ୍ତ ଦେବୀ ତୁମେ କଣ ଏ ଜୀବନ-ଟାକୁ ସୁଖ ପାଅ ?"

ସୁମନ୍ତ ହସି ହସି କହିଲେ, "ସୁଖ ନପାଇ ବା କାହିଁକି ? ଅସୁବିଧା ତ କିଛି ନାହିଁ । ଖାଇବା ପିଇବା, ନାଚିବା କୁଦିବା, ମଉଜ ମଜଲିସ୍ କରିବା ସବୁ ତ ହୋଇ ପାରୁଛି । ସୁଖ ନ ଲାଗିବ କାହିଁକି ? ଅଚ୍ଛା ତୁମକୁ ?"

ସୁର କହିଲେ, "ସେଇଥିପାଇଁ ତ ଆସିଛି ତୁମମାନଙ୍କ ସଙ୍ଗରେ ହସି ଖେଳି ମୋ ଜୀବନଟାକୁ କଟାଇ ଦେବାକୁ । ତେବେ ଏଥିରେ ସନ୍ଦେହର କାରଣ କଣ ?"

ସୁମନ୍ତ ଉଠି କହିଲେ, ନା ସନ୍ଦେହ କିଛି ନାହିଁ ସମସ୍ତ ହୋଇଗଲାଣି, ଅଚ୍ଛା । "ନମସ୍କାର ।"

ସୁର କହିଲା, "ଆଉ ଟିକିଏ ବସନ୍ତୁ ନା ।"

ସୁମନ୍ତ ହସି ହସି କହିଲେ, "ପରେ ଆସିବି, ବହୁତ କାମ ପଡ଼ିଛି, ମତେ ସବୁ ସବୁ ସାରିବାକୁ ହେବ, ନମସ୍କାର ।"

"ନମସ୍କାର ।" ସୁର ଜଣାଇଲା

ସୁମନ୍ତ ଚାଲିଗଲା ପରେ ହୋ ହୋ ହୋଇ ହସି ଉଠିଲା । ମନକୁ ମନ କହିଲା "ନମସ୍କାର ।" ଜୀବନକୁ ତାହାହେଲେ କେହି ଚିହ୍ନି ନାହାନ୍ତି । ଅନ୍ଧ ଦସ୍ୟୁ ଗୁଡ଼ାକ, ଚିହ୍ନିବେ ଜୀବନକୁ । ହା, ହା, ହା,...

—୧୦—

ଏହାପରେ ବହୁତ ଦିନ ଚାଲିଗଲା । ଏତେଦିନ ସେଠାରେ ରହିବାକୁ ତାହାକୁ ଭଲ ଲାଗିଲା ନାହିଁ । ଅନ୍ଧକାର ଗୁମ୍ଫା ମଧ୍ୟରେ ବହୁତ ଦିନ ରହି ରହି ବ୍ୟସ୍ତ ହୋଇ ପଡ଼ିଲେଣି । ସବୁବେଳେ କେମିତିଶିଙ୍କର ସେହି ଏକ ଚିନ୍ତା, କିପରି ବାହାରକୁ ଯିବେ । ଜମିଦାର ତାଙ୍କ ଉପରେ ସନ୍ଦେହ କରି ବାହାରକୁ ଛାଡ଼ୁନାହିଁ । ସୁବିଧା ମଧ୍ୟ ଘଟୁ ନାହିଁ ବାହାରକୁ ଯିବାକୁ । ବାହାରକୁ ଗଲେ ସେ ନା ଅଶୋକ ବାବୁଙ୍କ ସଙ୍ଗେ ଦେଖା କରିବେ । ତାଙ୍କ ସବୁକଥା କହିବେ ଏବଂ ତାଙ୍କଠାରୁ ପୁଲିସ ଆଣି ଜମିଦାରକୁ ଧରାଇ ଦେବେ । କିନ୍ତୁ ବାହାରକୁ ତ ଯିବାକୁ ସୁଯୋଗ ମିଳୁ ନାହିଁ । ଏସବୁ କରିବେ କିପରି ?

ସେଦିନ ରବିବାର । ଦିନର ପରେ ସେନୋଟି ଅସ୍ପନରେ ଚିନ୍ତାଶୀଳ ଅଧୀନ । ସମସ୍ତଙ୍କ ମୁହଁରେ ଚିନ୍ତାର ଭାବ ଫୁଟି ଉଠିଛି

ଯେପରି କିଛି ଗୋଟିଏ ବଡ଼ ଗୁରୁତର କାମ କରିବାକୁ ଯାଉଛନ୍ତି । ବାହାରକୁ ଯିବାପାଇଁ ନବ ନବ ପ୍ରକାର ଚିନ୍ତା ଖେଳୁଛି । କିନ୍ତୁ କୌଣସିଟା କୃତକାର୍ଯ୍ୟ ହୋଇପାରୁ ନାହିଁ । ସିଗାରେଟ୍ ଧୂଆଁରେ ଘରଟି ଅନ୍ଧାର, ସମସ୍ତେ ଧୂଆଁ ଛାଡ଼ି ଭାବନାରେ ବ୍ୟସ୍ତ ।

ହଠାତ୍ ନର ଶଙ୍କର କହି ଉଠିଲା, "ପାଇଛି, ପାଇଛି ଏଇବାର ପାଇଛି ।" ରବି ଏବଂ ସୁର ଦୁହେଁଯାକ ଏକ ସାଙ୍ଗରେ କହି ଉଠିଲେ, 'କଣ ପାଇଛୁରେ !' ନର ସିଗାରେଟ ଧୂଆଁ ଛାଡ଼ୁ ଛାଡ଼ୁ କହିଲା, 'ଯଦି ଆମେ ମ୍ୟାନେଜରଙ୍କୁ ହାତ କରି ହୋଟେଲକୁ ଯାଇ ପାରିବା ତେବେ ସେଠାରୁ ଯିବାକୁ କିଛି ବିପଦ ନାହିଁ କି ବାଧା ନାହିଁ । କିନ୍ତୁ ମ୍ୟାନେଜରଙ୍କୁ ହାତ କରିବ କିଏ ?"

ତିନିବନ୍ଧୁଙ୍କର ପୁଣି ଭାବିଛନ୍ତି ପଡ଼ିଲା । ବହୁତ ଯୁକ୍ତି ତର୍କ ପ୍ରାୟ ଦୁଇଘଣ୍ଟା ହେବା ପରେ ଠିକଣା କଲେ ନର ତ ଉପଯୁକ୍ତ ହେବ । 'କିନ୍ତୁ କିପରି ?" ନର ପଚାରିଲା ।

ସୁର କହିଲା, ମ୍ୟାନେଜର ତତେ ଖୁବ୍ ଭଲ ପାଏ । ତୁ ଯଦି ତାଙ୍କୁ ଯାଇ ଏ କଥା କହୁ ତା ହେଲେ ବୋଧେ ସେ ତୋ କଥା ଫିଙ୍ଗିବ ନାହିଁ ।"

ରବି ପଚାରିଲା, "କେଉଁ କଥା ।"

ସୁର ଦରପୋଡ଼ା ସିଗାରେଟଟାରେ ନିଆଁ ଲଗାଇ ଲଗାଇ କହିଲା, 'କେବଳ କହିବୁ, ଆମେ ଏତେ ମାସ ଇୟା ଭିତରେ ରହିଲୁଣି, ଟିକିଏ ବାହାରଟା ଦେଖନ୍ତୁ ଏବଂ ଯଦି ଜମିଦାରଙ୍କ ମନ ଲାଗି କିଛି ଜିନିଷ ପାଆନ୍ତୁ ତେବେ ଆଣି ତାଙ୍କୁ ଭେଟି ଦିଅନ୍ତୁ । ତାପରେ ବାହାରକୁ ତିନିଜଣଯାକ ଗଲେ, ଦରକାର ବୁଲିବା ନାଁରେ ମୁଁ ଯିବି ଅଟଣାକ ବାବୁଙ୍କ ଘରକୁ । ସେଠାରେ ତାଙ୍କୁ

ସବୁକଥା କହିବ ଏବଂ ସାହାଯ୍ୟ ମାଗିବ । ସେ ତ ମୋର କଲେଜ ବେଳର ସାଙ୍ଗ । ସେ ବୋଧହୁଏ ମୋ କଥା ଶୁଣିବେ ନାହିଁ । ଏ ବିପଦରେ ନିଶ୍ଚୟ ଆମକୁ ସାହାଯ୍ୟ ଦେବେ ।"

ସମସ୍ତଙ୍କ ମନକୁ ଏ କଥାଟା ବେଶ୍ ପାଇବ । ସମସ୍ତେ ହେଉ ବୋଲି କହିଲେ । ତାପରେ ସଭା ଭଙ୍ଗ ହେଲା । ନିଜ ନିଜ ରୁମ୍‌କୁ ଚାଲିଗଲେ ।

ସେଦିନ ରାତ, ମିଟିଙ୍ଗ ସରିଲା । ସମସ୍ତେ ଯେ ଯାହା ରୁମ୍‌କୁ ଚାଲିଗଲେ । ଏତା ନର ଥାଏ ଏବଂ ମ୍ୟାନେଜର ସେ ରୁମ୍‌ରୁ ଘଲବେଳକୁ ପଛଅଡ଼ୁ ଡାକିଲା । ମ୍ୟାନେଜର ପଛକୁ ବୁଲି କହିଲା, "କିଏ ନର, କଣ ?"

ଗୋଟିଏ 'କଥା', ନର କହିଲା ।

ମ୍ୟାନେଜର ପଚାରିଲା କଣ ?

ନର କହିଲା, ରାଜି ହେଲେ ସିନା କହିବ ।

ମ୍ୟାନେଜର ହସି ହସି ପଚାରିଲା, "କଥା କଣ କହ, ତୋ କଥା କେବେ ହଗି ଦେଇଛି ।"

ନର କନକ ସ୍ୱରରେ କହିଲା, "ଆମେ ବହୁତ ଦିନ ହେଲା ବାହାରର ଦୃଶ୍ୟ ଦେଖି ନାହୁଁ । ସୂର୍ଯ୍ୟ କିରଣ ପାଇ ନାହୁଁ । ବାହାରର ସୌନ୍ଦର୍ଯ୍ୟରୁ ଆମେ ବହୁତ ଦୂରରେ ଅଛୁଁ । ଆପଣ ଦୟା କରନ୍ତେ, ତେବେ ଆମେ ଟିକିଏ ବାହାର ବୁଲିବାକୁ ଯାଆନ୍ତୁ । ଏ ଓଳି ଯାଇ ଆର ଓଳିକୁ ଫେରି ଆସନ୍ତୁ ।"

ମ୍ୟାନେଜର ମନେ ମନେ କିଛି ସମୟ ଭାବିଲା । ତାପରେ ଭାବିଲା ବେଳେ କହିଲା "ଅଚ୍ଛା, ମୁଁ ଯାଉଛି ବର୍ତ୍ତମାନ ଜମିଦାରଙ୍କଠାରୁ

ଅନୁମତି ଆଣିବା ପାଇଁ । ତୁମେମାନେ ଠିକ୍ ହୁଅ ।" ମ୍ୟାନେଜରର ଏକଥା କହି ଅଦୃଶ୍ୟ ହୋଇଗଲା ।

ଜୀବ ଆସି ସୁର ଏବଂ ରବିଙ୍କୁ ଏକଥା କହିଲା । ତିନିହେଁ ଲୁଗା ପିନ୍ଧି ଠିକ୍ ହେଲେ । ତଥାପି ଏ ସମସ୍ତଙ୍କ ମନରେ ଭୟ ହେଉଥାଏ । କାଳେ ଜମିଦାର ମନା କରିବେ, କଣ କହିବେ । ଅଚ୍ଛା ଦେଖାଯାଉ, ଜମିଦାର ମ୍ୟାନେଜରଙ୍କୁ ଖୁବ୍ ଭଲ ପାଏ, ସେ ନିଶ୍ଚୟ ହଁ କରିବ । ଏଇପରି ଭାବୁଛନ୍ତି, ଏହି ସମୟରେ ମ୍ୟାନେଜର ଆସି ହସ ହସ ମୁହଁରେ ପହଞ୍ଚି ଗଲେ । ତାଙ୍କର ହସ ମୁହଁ ଦେଖି ବନ୍ଧୁ ତିନିହେଁ ଜାଣି ପାରିଲେ ଯେ, ତାଙ୍କର ଆଶା ପୂର୍ଣ୍ଣ ହୋଇଛି ।

ମ୍ୟାନେଜର କହିଲେ, "ଚାଲ ଭବନ ବାହାରି ଆସ ।"

ତିନିବନ୍ଧୁ ମ୍ୟାନେଜରଙ୍କ ସଙ୍ଗେ ବାହାରି ଆସିଲେ ।

ବହୁଦିନ ପରେ ମୁକ୍ତାକାଶ ତଳେ ତିନିବନ୍ଧୁ ଆସି ପହଞ୍ଚିଲେ । ସେମାନଙ୍କର ଆନନ୍ଦ କହିଲେ ନ ସରେ । ବହୁତ ଦିନ ପରେ ପୁଣି ସହରର ମୁକ୍ତବାୟୁ ତଳେ ପହଞ୍ଚିଛନ୍ତି । ତିନିବନ୍ଧୁଙ୍କ ମୁହଁରେ ହସ ଫୁଟି ଉଠିଲା । ତିନିବନ୍ଧୁ ଶୀଘ୍ର ଶୀଘ୍ର ହୋଟେଲ ଆଡ଼କୁ ଅଗ୍ରସର ହେଲେ । ସେଦିନ ରାତିକ ସେଠାରେ ରହିଲେ ।

ତା ପରଦିନ ଭୋରରୁ ଉଠି ନିତ୍ୟକର୍ମ ଶେଷ କରି ତିନିବନ୍ଧୁ ବାହାରି ପଡ଼ିଲେ ବୁଲିବାକୁ । ହୋଟେଲର ବହୁତ ଦୂରରେ ଗୋଟିଏ ଛକ ଉପରେ ଜଣେ କହିଲା, "ଦେଖନ୍ତୁ ଜୀବନବାବୁ । ବର୍ତ୍ତମାନ ଏପଣି ଅଶୋକ ବାବୁଙ୍କ ଘରକୁ ଯାଆନ୍ତୁ । ଆମେ ଭଣ୍ଡାର ଅଡ଼େ ଯାଉଛୁ । ଯେ ଆଗେ ଆସିବ, ସେ ଅନ୍ୟକୁ ଏହିଠାରେ

ଅପେକ୍ଷା କରିବ । ତାପରେ ଜଣକଣ ମିଳି ହୋଟେଲକୁ ଯିବା । ନଇଲେ ମ୍ୟାନେଜରର ସନ୍ଦେହ ହୋଇପାରେ । ହଁ, ଆଜି ଗୋଟେ କଥା । ମ୍ୟାନେଜରର ସନ୍ଦେହ କରି ଆମ ପଛରେ ଲୋକ ଲଗାଇ ପାରେ, ହୁସିଆର ହୋଇଯିବ ।" ଗୀବନ୍ ହଜି କହୁ, ରବି ଏବଂ ନବଠାରୁ ବିଦାୟ ନେଇ ବାହାରିଲା ଅଶୋକ ବାବୁଙ୍କ ଘରକୁ ।

—୧୧—

ଗଙ୍ଗା ନଦୀର ପୂର୍ବ ପାଖରେ ଥିବା ନାଲି ରଙ୍ଗର ଏକ ସୁବିଶାଳ ପ୍ରାସାଦ ପଥିକମାନଙ୍କର ଆଖିରେ ପଡେ । ଏଇ ପ୍ରାସାଦଟିର ମାଲିକ, ଭାରତ ପ୍ରସିଦ୍ଧ ଡିଟେକ୍ଟିଭ ଇନ୍‌ସପେକ୍ଟର ଅଶୋକବାବୁ ପ୍ରସାଦର ସମ୍ମୁଖରେ ସୁନ୍ଦର ବଗିଚା । ନାନା ରଙ୍ଗର ଫୁଲଗଛ-ମାନଙ୍କଦ୍ୱାରା ବଗିଚାଟିର ଶୋଭା ବର୍ଦ୍ଧିତ ହୋଇଛି । ସେ ଶୋଭା ଦେଖିଲେ କବିର କଳ୍ପନା ଫୁଟି ଉଠେ । ପଥିକର ନୟନ ଝଲସି ଯାଏ । ସେ ଭାବ ଗୁଡ଼ିକ ବଡ଼ ଅଦ୍ଭୁତ କଥା । ଲାଗେ ଯେପରି ନୟନ ଆଗେ କେତେ ରଙ୍ଗିନ ଛବି । ଦଣ୍ଡେ ଚିଅ ହୋଇଯାଏ, ପଲକ ପଡେ ନା । ଲୋକମାନଙ୍କର ହୋ ହା ଶବ୍ଦରେ ତାର ଭାବନା ଭାଙ୍ଗିଯାଏ । ସେ ତାର ଗନ୍ତବ୍ୟ ପଥରେ ଗତି କରି ବାରୁ ପୁନର୍ବାର ବଗିଚାଟିକୁ ଅନାଏଁ ।

ବଗିଚାଟି ପ୍ରାସାଦର ସୌନ୍ଦର୍ଯ୍ୟ ବର୍ଦ୍ଧିତ । ବଗିଚାର ଗୋଟିଏ କଡ଼ରେ ଦୁଇଟି ପଥର ନିର୍ମିତ ଚଉକି । ଚଉକି ଦୁଇଟିର ମଧ୍ୟ ଭାଗରେ ଗୋଟିଏ ପଥର ଟେବୁଲ । ଟେବୁଲ ଉପରେ ଗୋଟିଏ ଅମୃତବଜାର ପତ୍ରିକା ଥୁଆ ହୋଇଛି । ଗୋଟିଏ ଚଉକିରେ ଅଶୋକବାବୁ ଏବଂ ଅନ୍ୟ ଗୋଟିଏ ଚଉକିରେ ତାଙ୍କର ସ୍ତ୍ରୀ ଅଳକା ଦେବୀ ଆସୀନା । ଅଶୋକବାବୁ ଗମ୍ଭୀର ଚିନ୍ତାମଗ୍ନ । ଅଳକା ଦେବୀଙ୍କର

ନୟନଯୁଗଳ ଅଶ୍ରୁ ଜଳରେ ଭସା । ଭାବ ସୁରଲଚନ୍ଦ୍ର ବହୁତ କଥା । କନ୍ୟା ଇଚ୍ଛା କଥା ମଧ୍ୟ । ସ୍ୱେଚ୍ଛର କନ୍ୟାକୁ ବହୁତ ଧନ ଦେଲ ହରାଇ ବସିଛନ୍ତି । ବହୁତ ଧନ ଦେଲ ତାଙ୍କୁ ଦେଖି ନାହାନ୍ତି । କନ୍ୟା ତାଙ୍କୁ ନ ଦେଖି କଣ ହେଉଥିବ, ତାର ଅବସ୍ଥା କଣ ହୋଇଥିବ, ସେ କଣ ଅଜ ବଞ୍ଚିବ । ସେ କଣ ତାଙ୍କୁ ଅଜ ଫେର ପାଇବେ । ଏତେ ବଡ ଉଦ୍‌ବେଗର ଭାବ ଭାରତରେ ନାଁ ପହଞ୍ଚି, କିନ୍ତୁ ତାଙ୍କ କବଳରୁ ନିଜ କନ୍ୟାକୁ ରକ୍ଷା କରିବାର କ୍ଷମତା ନାହିଁ । ସ୍ତ୍ରୀ ମଧ୍ୟରେ ମଧ୍ୟ କାହାର ବିଶ୍ୱ ନାହିଁ । ଅଶୋକ ବାବୁ ମଧ୍ୟ ଧୈର୍ଯ୍ୟ ଧରି ରହିପାରୁ ନାହାନ୍ତି ।

ସ୍ତ୍ରୀର ଲୁହ ପୋଛି ଦେଇ ଦେଇ କହିଲେ, ନା ନା ଅଳକା ତୁମେ ବ୍ୟସ୍ତ ହୁଅନ, ମୁଁ କଣ କରିବି କହିଲ । ଗୁପ୍ତଅନେକ ଲୋକ ପଠାଇଲି, ମୁଁ ନିଜେ ମଧ୍ୟ ବହୁ ଜାଗାରେ ସନ୍ଧାନ ନେଲି, କିନ୍ତୁ କୌଣସି ଠାରେ ପାଇଲି ନାହିଁ । ଭାରତରେ ଏପରି କୌଣସି ସ୍ଥାନ ନାହିଁ, ଯେଉଁଠା କ ମୁଁ ନ ଖୋଜିଛି । କିନ୍ତୁ ମୋର ଅଶା ବୃଥା, ମୁଁ କୌଣସିଠାରେ ପାଇଲି ନାହିଁ ; ତଥାପି ପୁଲିସ ଲଗାଇଛି; ସୁଇନ୍ଦା ବନ୍ଦୋବସ୍ତ କରିଛି, କେବଳ ଗୋଟିଏ ସ୍ଥାନ ମୋର ସନ୍ଦେହ ହେଉଛି । ଯଦି ସେହି ସ୍ଥାନ ହୋଇଥାଏ ତେବେ ସବୁ ବାହାରିବ, ବ୍ୟସ୍ତ ହୁଅ ନା । ଧୈର୍ଯ୍ୟ ଧର । ଅଜ ସାତଦିନ ଅପେକ୍ଷା କର । ତାର ଭିତରେ ଯଦି ତୁମର ହୃଦୟର କନ୍ୟା ଲତାକୁ ଫେରାଇ ନ ଦେଇଛି, ତେବେ ମୁଁ ସ୍ୱଦେଶ ଛାଡ଼ି ଦେବି । ଏଇ ମୋର ପ୍ରତିଜ୍ଞା, କେବଳ ତୁମର ପାଖରେ ନୁହେଁ, ଜଗତ ପାଖରେ । ଏତିକ କହି ଅଶୋକବାବୁ ଅଳକାର କୋମଳ ହାତ ଦୁଇଟିକୁ ଚାପି ଧରିଲେ ।

ଜୀବନ ଅଶୋକ ବାବୁଙ୍କ ଅଲକ୍ଷରେ ଉତ୍ତରକୁ ଅସି କବାଟରେ ଥିବା ଗୋଟିଏ ବଡ଼ ଗଛ ଅଢୁଆଳରେ ବସି ସବୁ ଶୁଣିଥିଲା । ସେ ଭାବିଲା, "ସତେ ଅଶୋକବାବୁ ସେ ସ୍ଥାନର ଅନୁସନ୍ଧାନ ନେଇଛନ୍ତି । ତେବେ ତ ଭଲ । ମୁଁ ତାଙ୍କୁ ସାହାଯ୍ୟ କରିବି । ଚୋରଙ୍କୁ ଧରାଇ ଦେବି । ବଦମାସ୍ ଜମିଦାର ତୋତେ ପରିତ୍ରାଣ ନାହିଁ । ଏଇଥର ତୋର ଲୁଚା ଖେଳା ସବୁ ଶେଷ ହୋଇଯିବ ।"

ଏହି ସମୟରେ ଅଶୋକ ବାବୁଙ୍କର ପାଟି ଶୁଣାଗଲା । ସେ କହୁଛନ୍ତି "ଅଳକା ମୋ ରାଣୀଟି ପରା ଆଜ କାନ୍ଦନା । ଗଲା ସବୁତ୍ ଫେରିବେ ଆଣିବ ।" ଅଳକା ଆଖିରୁ ଲୁହ ପୋଛିଦେଇ ଚାଲିଗଲେ ଭିତରକୁ ।

ଅଳକା ଚାଲିଯିବା ପରେ ଜୀବନ ଗଛ ପଛଅଡ଼ୁ ବାହାରି ଆସିଲା ଏବଂ ଅଶୋକ ବାବୁଙ୍କ ପଛଅଡ଼େ ଠିଆ ହୋଇ ଡାକିଲା, "ଅଶୋକ ଭାଇ, ଅଶୋକ ଭାଇ ।"

ଅଶୋକ ବାବୁ କଣ ଭାବୁଥିଲେ, ହଠାତ୍ ପଛକୁ ଚାହିଁ ଦେଖିଲେ ଜୀବନ ଫାଟକରେ ଠିଆ ହୋଇଛି ।

"କିରେ ଜୀବନ ଏତେ ସକାଳୁ କୁଆଡ଼େ ? ଆ, ଆ ବସିପଡ଼ ।" ପୁନର୍ବାର ପାଟିକରି ଡାକିଲେ, "ଅଳକା ଦୁଇ ଗ୍ଲାସ ସରବତ୍ ଆଣିବ ।"

ତାପରେ ଜୀବନକୁ ପଚାରିଲେ, ଏଣେ କୁଆଡ଼େ ? ବାଟ ଭୁଲିଗଲୁ ପରା । କଥା କଣ । ଏ ଅସମୟରେ ଯେ ।'

ଜୀବନ ସବୁକଥା ଲୁଚାଇ କହିଲା, 'ହଁ ଭାଇ, ବଉଁଶ ମୂଳ ଅଳକା ଦେଈଙ୍କ ସହିତ କଣ କଥାବାର୍ତ୍ତା ଚାଲିଥିଲା କହିଲୁ ।'

ଅଶୋକବାବୁ କହିଲେ, 'ଓଃ, ତା ହେଲେ ତୁ ସବୁ ଶୁଣିଛୁ, ଆଉ କହିବ କଣ ।'

ଜୀବନ ଦୀର୍ଘ ନିଶ୍ୱାସ ମାରି କହିଲା, "ହଁ, ସବୁ ଶୁଣିଛୁ, କିନ୍ତୁ ତାର କିଛି ପ୍ରତିକାର ହେଉଛି ନା ନାହିଁ ?"

ଅଶୋକ ବାବୁଙ୍କ ଆଖି ଲୁହରେ ଭରିଗଲା । ସେ ଭାର ଭାର ସ୍ୱରରେ କହିଲେ, "ବହୁତ ଚେଷ୍ଟା କଲିଣି, କିନ୍ତୁ କିଛି କରିପାରି ନାହିଁ ।'

ଜୀବନ କିଛିଏ ଭାବି କହିଲା "ଅଚ୍ଛା, ମୁଁ ଯଦି ତାର ଉପାୟ ବତାଇ ଦିଏ ତେବେ ?"

"ବତାଇ ଦେବୁ, ସତରେ ବତାଇ ଦେବୁ ଜୀବନ, ସତ କହୁଛୁ ତୁ । ମୁଁ ତ କିଛି ବୁଝିପାରୁ ନାହିଁ କହ ଭାଇ, ସତ କହ । କଣ ଉପାୟ ଜାଣୁ କହିଦେ ।" ଅଶୋକ ବାବୁ ବ୍ୟାକୁଳ ଭାବରେ ଜୀବନର ଦୁଇ ବାହୁକୁ ଧରି କହିବାକୁ ଲାଗିଲେ ।

ଏହି ସମୟରେ ଅଲକା ଦୁଇଗ୍ଲାସ ସରବତ୍ ଆଣି ଆସୁଥିଲେ କିନ୍ତୁ ଜୀବନକୁ ଦେଖି ଶଙ୍କି ନ ପାରି ଚାଲିଯିବାକୁ ବସିଥିଲେ ।

ଅଶୋକବାବୁ ଉଠିପଡ଼ି ଅଲକାକୁ ଅଟକାଇ ଦେଇ କହିଲେ, "ଅରେ ଜୀବନକୁ କଣ ଲାଜ କରୁଛ ମ । ସେ ପରା ତୁମ କଲେଜ ବେଳର ଘନିଷ୍ଠ ବନ୍ଧୁ । ଏହାର କଥା କେତେବାର ତୁମ ଆଗେ କହିଛି । ତାକୁ ଦେଖି ଲୁଚିଯାଉଛ । ବସ ବସ । ହଁ ଗୋଟିଏ କଥା । ଜୀବନ ତୁମ୍ଭର ଭାଗ୍ୟକୁ ଫେରାଇ ଆଣିବାର ଉପାୟ ବତାଇ ଦେବ ।"

ଅଲକାଙ୍କର ଯାହା ଲାଜ ସଙ୍କୋଚ ଥିଲା ସବୁ କୁଆଡ଼େ ଚାଲି-ଗଲା ।

ସେ ଉଦ୍‌ବିଗ୍ନ ସ୍ୱରରେ କନ୍ୟା ଲତାର ଖବର ପଚାରିଲା ।

ଜୀବନ ହର୍ଷ ଧ୍ୱନି କରିଲା, "ଏତେ ବ୍ୟସ୍ତ କାହିଁକି ? ମତେ ଶୋଷ ହେଉଛି ସରବତ୍‌ଟା ପିଇଦିଏ ।"

ଅଳକାକୁ ବଡ଼ ଲଜ୍ଜା ମାଡ଼ିଲା । ସେ କହିଲା, "ମନରେ କିଛି ଭାବିବ ନାହିଁ ଜୀବନ ଭାଇ । ପିଇଦିଅ, ତା ପରେ ସବୁ ଶୁଣିବ । କନ୍ୟାଲାଗି ମୋର ମୁଣ୍ଡ ବିଗିଡ଼ି ଗଲାଣି ।"

ଜୀବନ ସରବତ୍‌ ପିଇ ପିଇ କହିଲା, "ତା ସତ ।"

ସରବତ୍‌ ପିଆ ସରିଲା ।

କିଛି ସମୟ ପାଇଁ ଉଭୟେ ନୀରବ ।

ନୀରବତା ଭାଙ୍ଗି ଜୀବନ ଆରମ୍ଭ କଲା, "ନବକୁମାର ମୋର ବାଲ୍ୟ ବନ୍ଧୁ । ଏକା ଗ୍ରାମରେ ଘର । ଖାଲି ବନ୍ଧୁ ନୁହଁ ଯାହା ସେ ହୋଇପାରେ, ଦୁନିଆରେ ଅନ୍ୟ କେହି ହୋଇ ନ ପାରନ୍ତି । ଖୁବ୍ ସଚ୍ଚୋଟ ଲୋକ ସେ । ସେ ଗ୍ରାମରେ କାହାରିକୁ ଖାତିର କରେ ନାହିଁ । ଗ୍ରାମର ଜମିଦାର ଖୁବ ବଦମାସ୍‌ । ସେ ପ୍ରଜାମାନଙ୍କ ତଣ୍ଟି ଚିପି ଧନ ଅପହରଣ କରେ । କେବଳ ଧନ ନୁହେଁ ଗ୍ରାମର ଯୁବତୀ କନ୍ୟାମାନଙ୍କୁ । ମୋର ଗୋଟିଏ ଭଉଣୀ ଅଛି ଜାଣ । ନବ ସହିତ ତାର ବିବାହ ହେବାର ଠିକ୍ ହୋଇଥିଲା । ବଦମାସ ଯେମିତି ଏ କଥା ଶୁଣିଛି ତା ଦେହ ଗରମ ହୋଇଗଲା । ସେ ବାଟ ଖୋଜିଲା କିପରି ତାକୁ ସେ ହରଣ କରିବ । ମୁଁ କଟକରେ । ନବ ଅନ୍ୟ ଗ୍ରାମକୁ ଯାଇଛି । ଏହି ଅବସରରେ ମୋର ପିତାଙ୍କୁ ହତ୍ୟା କଲା ମାତାଙ୍କୁ ମଧ୍ୟ । ଶେଷରେ ମୋର ଏକମାତ୍ର ଭଉଣୀ ରେଖାକୁ ହରଣକଲା ।"

ଜୀବନ ଏତିକି କହି କାନ୍ଦି ପକାଇଲା ।

ଅଶୋକ ବାବୁ ଓ ଅଲକା ଦେବୀ ଏକାଗ୍ର ଚିତ୍ତରେ ଜୀବନଙ୍କୁ ଚାହିଁ ରହିଲେ ।

ଜୀବନ ଆଖିରୁ ଲୁହ ପୋଛି ପୁନର୍ବାର କହିଲେ, "ନବ ଫେରି ଆସି ଯେମିତି ଏ କଥା ଶୁଣିଲା ସେମିତି ମୋ ପାଖକୁ ଧାଇଁ ଆସିଲା । ମୁଁ ସବୁ କଥା ଶୁଣିଲି ।

ତା କଥା ଶୁଣି ତା ପର ଦିନ ଗ୍ରାମକୁ ବାହାରିଲି । ଗ୍ରାମରେ ପହଞ୍ଚି ଯାହା ଦେଖିଲି ଏବଂ ଶୁଣିଲି ମତେ ବଡ଼ ଆଶ୍ଚର୍ଯ୍ୟ ଲାଗିଲା । ଜମିଦାର ଘରେ ନ ଥିଲେ । ଗୁପ୍ତରେ ତାଙ୍କ ଘରେ ପଶିଲି । ସବୁ-ଆଡ଼ ଅନୁସନ୍ଧାନ କଲି । ତାଙ୍କ ବୈଠକ ଖାନାରେ ପଶି ଦେଖିଲି ଝଣ୍ଡେ ଚିଠି ଲେଖା ହୋଇଛି ଏବଂ ତା ଛାପା କାଗଜରେ ଛାପା ହୋଇଛି । ସେଥିରେ ଅକ୍ଷର ଗୁଡ଼ାକ ଉଠିଯାଇଛି । ମୁଁ ସେ ଅକ୍ଷର ଗୁଡ଼ାକ ଯୋଡ଼ି ଜାଣି ପାରିଲି, ଜମିଦାର ରେଖାଙ୍କୁ କଲିକତା ନେଇ ଯାଇଛନ୍ତି । ଫେରି ଆସିଲି ନବପାଖକୁ । ଦୁହେଁ ବାହାରିଲୁ କଲିକତା । ଏଠାରେ ଆସି ରହିଥିଲୁ ଗୋଟିଏ ହୋଟେଲରେ । ସେଇଁଠାରେ ହିଁ ହୋଟେଲରେ ଭଗବାନଙ୍କ ଦୟାରୁ ଆମେ ପାଇଲୁ ତାର ଅନୁସନ୍ଧାନ । ହୋଟେଲର ମ୍ୟାନେଜର ହେଉଛନ୍ତି ବଦମାସ୍ ଜମିଦାରର ଡାହାଣ ହାତ । ସେଠାରେ ଦୁଇବନ୍ଧୁ ନାମ ବଦଳାଇ ଛଦ୍ମବେଶରେ ରହିଲୁ । ନାମ ଦେଲୁ ସୁର ଏବଂ ନର । ତା ପରେ ମ୍ୟାନେଜର ଆମକୁ ବହୁତ ବୁଝାଇଲା ତାଙ୍କ ଦଳକୁ ନେବାକୁ । କାରଣ ଆମେ ଯୁବକ । ଭଉଣୀକୁ ତ ଖୋଜିବାକୁ ଆସିଥିଲୁ, ତା କଥାରେ ରାଜି ହେଲୁ । ଦିନେ ରାତିରେ ଆମକୁ ସେ କଳା ପୋଷାକ ପିନ୍ଧି-ବାକୁ ଦେଲା । ମନ ହେଉ ନ ଥାଏ । ବାଧ୍ୟହୋଇ ପିନ୍ଧିଲୁ । ତା

ସଙ୍ଗେ ଅଡ୍ଡା ଖାନାକୁ ଗୁଡ଼ିଲୁ । ବନ୍ଦୀଶାଳାରର ସତାବନ ନମ୍ବର ଘର । ଘରର ବାହାର ଦେଖିବାକୁ ସୁନ୍ଦର ନୁହେଁ । ଭଙ୍ଗା ଏକ-ପହଳା । ତାହାର କଡ଼, ବନ୍ଦ । ସମସ୍ତେ ଭାବନ୍ତି ଯେ ଭିତରେ କେହି ନାହାନ୍ତି, କିନ୍ତୁ ତାରି ଭିତରେ ସେ ବଦମାସ୍ ଅଡ୍ଡା ଜମାଇଛି । ଅଧୈର୍ଯ୍ୟ ହୁଅ ନାହିଁ । ଶୁଣ ତା ପରେ କଣ ହେଲା ।"

ଏତିକି କହି ଜୀବନ ସିଗାରେଟ୍ ଖଣ୍ଡେ ଲଗାଇଲା । ଗୋଟାଏ ଦମ୍ ଟାଣି କହିଲା, "ଆମେ ମ୍ୟାନେଜରଙ୍କ ସଙ୍ଗରେ ଯାଇ ବହୁତ ବାଟ ଗୁହଣ୍ଡି, ଠିଆ ହୋଇ ଭିତରକୁ ପଶିଲୁ । ତା ଭିତରେ ପଥର କଟା ଦେଇ ସବୁ ତିଆରି ହୋଇଚି, ଘର, ବନ୍ଦୀନାଗାର, ଗାଧୁଆ-ଘର ପ୍ରଭୃତି ।

ଅଶୋକ ବାବୁ ଚମକି ଉଠିଲେ । କହିଲେ, "ବନ୍ଦୀନାଗାର !"

ଜୀବନ କହିଲା, 'ହଁ, ଆହୁରି ଅନେକ କଥା ଅଛି । ଅଧୈର୍ଯ୍ୟ ନ ହୋଇ ଶୁଣ । ବନ୍ଦୀନାଗାରର ପରିଚାଳକ ପୁରୁଷ ନୁହେଁ, ଗୋଟାଏ ସ୍ତ୍ରୀ ଲୋକ, ବଳିତ ଫେଶନ୍ତା ଏବଂ ଧର୍ମୀ ବହୁତ ଗୁଡ଼ାଏ ଯୁବତୀ ସ୍ତ୍ରୀ । ଏଥିର ଜମିଦାର ସେମାନଙ୍କୁ ଭୁଲାଇ ରଖିଚି ଭାରି ବଡ଼ ଆଶ୍ଚର୍ଯ୍ୟ ହେଲି । ତା ପରେ ଶୁଣ । ଆହୁରି ଅନେକ କଥା, ଆଶ୍ଚର୍ଯ୍ୟ ହୁକାରେ ତିଆରି ସେ ସବୁ । ଶୂଳୀ ଦେବାର ବ୍ୟବସ୍ଥା ଅଛି ଭୟଙ୍କର ଭାବରେ । ସେ ସବୁ ଦେଖିଲେ ଦେହ ଶିହରି ଉଠେ । ବନ୍ଦୀନାଗାରରେ ମଧ୍ୟ କେତେକ ପ୍ରକାରର ନୂତନ ଧରଣର ବିଷାକ୍ତ ବାଷ୍ପ ତିଆରି ହୋଇଛି । ତାକୁ ଶୁଙ୍ଘିଲେ କେତେ ଘଣ୍ଟା ପାଇଁ ବେହୋସ ହୋଇଯାଏ ଏବଂ ଆଉ ଗୋଟିଏ ଅଛି, ତାକୁ ଶୁଙ୍ଘିଲେ ମୃତ୍ୟୁ ଅନିବାର୍ଯ୍ୟ । ମୁଁ ତାର ସନ୍ଧାନ ନେବାକୁ ବହୁବାର

ଚେଷ୍ଟା କରଣ । କିନ୍ତୁ ସେଥିରେ କୃତକାର୍ଯ୍ୟ ହୋଇପାର ନାହିଁ । ସେଠାକୁ ଗଲେ ହୁଏ ଭଲ ସ୍ଵରରେ କୁହିଁପାରବ ।

ଦରପୋଡ଼ା ଦିଗାରେଟରୁ ଦୁଇ ଟାଣ ଦମ୍ ଟାଣି ପୁନର୍ବାର ଜୀବନ ଆରମ୍ଭ କଲ, "ଚନ୍ଦ୍ରକାନ୍ତଭାବ ବଡ଼ ଜମିଦାରଙ୍କ ନାମ ବୋଧ-ହୁଏ ଶୁଣିଥିବ । ତାଙ୍କର ମୃତ୍ୟୁପରେ ତାଙ୍କର ବିଧବା ସ୍ତ୍ରୀ,ରବି ନାମକ ଏକ ପୁତ୍ର ଓ ଅଣା ନାମକ ଏକମାତ୍ର କନ୍ୟା ଥିଲା । ବଦମାସ୍ ଧନ ଏବଂ ରୂପ ଲୋଭରେ ଜମିଦାରଙ୍କ ସ୍ତ୍ରୀଙ୍କୁ ମାରି ଭାଇ ଭଉଣୀଙ୍କୁ ଗୋଟାଇ ନେଇ ବସିଛି । ସେଇଟି ମୋର ଏପଦର ସାଥୀ ଏବଂ ଭଉଣୀଟି, ତୁମ କନ୍ୟା ଏବଂ ମୋ ଭଉଣୀପର ବନ୍ଦିନୀ ।"

ଏ କଥା ଶୁଣି ଅଶୋକ ବାବୁଙ୍କ ଅଛିନ୍ନ ଅଗ୍ନି କଣା ବାହାର ପଡ଼ିଲା । ସେ ସ୍ଥିରକଲେ କିଛି ଘଟିଲେ, ବଦମାସ୍ କୋଟେ ଉପଯୁକ୍ତ ଶାସ୍ତି ଦେବ ।

ଅଳକା ଦେବୀ ଚୁପ୍ ହୋଇ ବସି ଶୁଣୁଥିଲେ । ତାଙ୍କର କିଛି କହିବାର ନ ଥିଲା । ଏଣୁ ସେ କିଛି କହିଲେ ନାହିଁ ।

ଜୀବନ ପୁନର୍ବାର କହିଲା, "ଧୈର୍ଯ୍ୟ ଧର, ଅଧୀର ହେଲେ ଚଳିବ ନାହିଁ । ଅଦ୍ଭୁତ ଅନେକ କଥା ଅଛି । ଜମିଦାର ଅତ୍ୟାଗ୍ରହ କରିବାକୁ ଯାଇ ପାରେ ନା । ସେମାନଙ୍କୁ ନାନାପ୍ରକାର ପ୍ରଲୋଭନ ଦେଖାଏ । ନିରାଶ ହୋଇ ଫେରେ । ରେଖା, ଲତା ଏବଂ ଅଣା ତ ସେ ବଦମାସ୍ର ବନ୍ଦୀନାଗାରର,ସ୍ତ୍ରୀମାନଙ୍କ ପର ହୋଇ ନାହାନ୍ତି । ତାଙ୍କ ହୃଦୟରେ ପ୍ରତିହିଂସାର ବହ୍ନି ଜଳି ଉଠେଣି । କିନ୍ତୁ ଅବଳା ସେମାନେ ଉପାୟ ନାହିଁ ? କରିବେ ବା କଣ ? ତାଙ୍କୁ ସାହାଯ୍ୟ କରୁଛି ବା କିଏ ? ବହୁତ କଷ୍ଟରେ ତାଙ୍କ ବନ୍ଦୀ ଘରର ସନ୍ଧାନ ନେଇ ତା ଭିତରେ ପଶିଲି । ଆହା ! ଏତେ ବଡ଼ଘରର ଝିଅମାନଙ୍କର

ବ ଶୋଚନୀୟ ଅବସ୍ଥା ! ନ ଖାଇ ନ ପିଇ ଦେହର ରକ୍ତ ଶୁଖି-ଲାଣି । ଚଳେ ଶୋଉଛନ୍ତି । ମୋତେ ବଡ଼ ବାଧ ଲାଗିଲା । ତଥାପି ତାଙ୍କୁ ଅଶ୍ୱାସନା ଦେଇ ଫେରି ଆସିଲି ।

ଜୀବନର ଆଖି ଛଳ ଛଳ ହୋଇ ଆସିଲା । ସେ ବାଧ ଢାଇ ହୋଇ କହିଲା, "ଅଳ୍ପୁର ମଧ କଥା ଅଛି ଅଶୋକ ଭାଇ । ତାଙ୍କ ଠାରୁ ଶୁଣିଲି ଯେ ଆସନ୍ତା ଅମାବାସ୍ୟା ଦିନ ଯଦି ସେମାନେ ବଦ୍‌ମାଙ୍କୁ ସ୍ୱାମୀ ପଦରେ ବରଣ ନ କରନ୍ତି ତେବେ ସେମାନଙ୍କର ମୃତ୍ୟୁ ନିଶ୍ଚିତ । ତା ସାଧିତ ହେବ ସ୍ୱ ହସ୍ତରେ । ମୋର ରକ୍ତ ଗରମ ହୋଇ ଉଠିଲା । ଅଜ ସାତଦିନ ମୋଟେ ବାକି । ଦାନ୍ତ ଚିପି କହିଲି, ଭୟ କରନା । ମୁଁ ସ୍ୱାରି ଭିତରେ ବଦମାସଙ୍କୁ ଜାତମ ନ କରି ରହିବ ନାହିଁ । ତାପରେ ସେଠାରୁ ବିଦାୟ ନେଇ ଫେରି ଆସିଲି । ମ୍ୟାନେଜରଙ୍କୁ ଧସ୍ତଧଇ କରି ବହୁତ କଷ୍ଟରେ ଅଜ ଏଠାକୁ ଆସି ପାରିଛି । ତୁମେ ଯଦି ମୋତେ ସାହାଯ୍ୟ କରନ୍ତ, ମୁଁ ବଞ୍ଚି ଯାଆନ୍ତି ।"

ଜୀବନ ଅଖିରୁ ଲୁହ ପୋଛି ଅଶୋକ ବାବୁଙ୍କ ହାତକୁ ଧରି ପକାଇ ମିନତି ଭରା ସ୍ୱରରେ କହିଲା, "ଆପଣ ମୋତେ ସାହାଯ୍ୟ ନ କଲେ ମୁଁ ଆଉ ବଞ୍ଚିବି ନାହିଁ । ଭଉଣୀଟି ଛଡ଼ା ଦୁନିଆରେ ମୋର ଆଉ କେହି ନାହିଁ । ଯେ କୌଣସି ପ୍ରକାରେ ତାକୁ ମୋତେ ରକ୍ଷା କରିବାକୁ ହେବ । କହନ୍ତୁ, ମୋତେ ସାହାଯ୍ୟ ଦେବେ ?"

ଅଶୋକ ବାବୁ ଜୀବନଙ୍କୁ ବସାଇ ଦେଇ କହିଲେ, "ମୁଁ ସାହାଯ୍ୟ ଦେବାକୁ ପ୍ରସ୍ତୁତ ଅଛି ।"

ଜୀବନ ଅଉ ଟିକିଏ ପାଖକୁ ଯାଇ କହିଲା, "ତେବେ ଶୁଣ, ମୁଁ ଅଜି ଯାଉଛି । ଚତୁର୍ଦ୍ଦଶୀ ଦିନ ରାତିରେ ମୁଁ ଆସିବି । ବୋଝା ନୁହେଁ । ଦିବ, ଜଣ ଏକ ଜବାବୃତ ଦଳଙ୍କୁ ନେଇ ଆସିବ । ଭୟ

ଭରିବ ନାହିଁ । ତୁମ୍ଭର ଶୋଇଲା ଘରେ ସେଦିନ କେହି ନଥିବ । ସେ ଘରଟା କେବଳ ପୋଲିସମାନଙ୍କ ଦ୍ବାରା ପୂର୍ଣ୍ଣ ହୋଇଥିବ । ଅବଶ୍ୟ ପ୍ରକାଶ୍ୟ ଭାବରେ ନୁହେଁ । ସମସ୍ତେ ସେ ଘରେ ଲୁଚିଥିବେ । ସେମାନେ ଆକ୍ରମଣ କରିବା ପୂର୍ବରୁ ଏମାନେ ଯେପରି ତାଙ୍କୁ ଆକ୍ରମଣ କରି ସେମାନଙ୍କ ହସ୍ତରୁ ସବୁ ଅସ୍ତ୍ର ଛଡ଼ାଇ ନିଅନ୍ତି । ତା ପରେ ସେମାନଙ୍କୁ ହାତ ବାନ୍ଧି । ଏ ସବୁ ଯେପରି ଅତି ଶୀଘ୍ର ଏବଂ ଚୁପ୍‌ଚାପ ଭାବରେ ହୁଏ । ତା ପରେ ଯେତେ ଡକାୟତ ଆସୁଥିବେ ସେତିକ ପୋଲିସଙ୍କୁ ସେମାନଙ୍କ ବେଶ ପୋଷାକ ଦେଇ ମୁଁ ନେଇ ଯିବି । ସେଠାରେ ଯଥାସ୍ଥାନରେ ମୁଁ ରଖିଦେବି । ତା ମଝିଦିନ ଅତି ଯେଉଁମାନେ ଥିବେ ସେମାନଙ୍କୁ ଗୋଟାଏ ମୋଟରରେ ଏଇପରି ଭାବରେ ନେଇ ଆସିବ । ତା ପରେ ତୁମକୁ ନେଇଯିବି ସେଇ ଗୁପ୍ତ-ଘରକୁ । ସେଠାକୁ ଗଲେ ଅଡ଼ ଯାହା ବନ୍ଦୋ[illegible] କରିଯିବ । ସ୍ତ୍ରୀ ଲୋକଙ୍କୁ ଗିରଫ କରିବାକୁ ମୁଁ ପାରୁ ପର୍ଯ୍ୟନ୍ତ ଚେଷ୍ଟା କରିବି । ସେମାନେ ଜାନୁ ଭାବ ଚଳଣି । ଟିକିଏ ଟେରେ ପାଇଲେ ସେମାନେ ଫୁରସାଇଟ୍ କରିବେ ।”

ଜୀବନ ଉଠି ଠିଆ ହେଲା, କହିଲା “ମୁଁ ଯାଉଛି ” ଆଉ ବ୍ୟସ୍ତ ହୁଅନ୍ତୁ ନାହିଁ । ସବୁ ଠିକ କରି ରଖିଥିବି । ଚତୁର୍ଥ ଦିନ ସନ୍ଧ । ଠିକ୍ ରାତ ବାରଟା । ଭୁଲ ନଯାନ୍ତୁ ସୋଦର । ମୁଁ ଆସି ପହଞ୍ଚିବି । ବିଦାୟ ଅଶୋକ ଭାଇ ବିଦାୟ । ନମସ୍କାର ଅଳକାଦେବୀ ପରେ ଦେଖା ହେବ । ଏତିକି କହି ଜୀବନ ସେହି ମୁହୂର୍ତ୍ତରେ ଯିବାକୁ ବାହାରିଲା ଠିକ ସେଇ ମୁହୂର୍ତ୍ତରେ ଗୋଟାଏ ଗୁଳି ସାଇଁ କରି ତା କାନ ପାଖ ଦେଇ ଚାଲିଗଲା ।

ଅଶୋକ ବାବୁ ଏବଂ ଅଲକା ଦେବୀ କଣ କହିଲା ବେଳେ ଚିତ୍କାର କରି ଉଠିଲେ । ହସୁଲା ଦେଖେ ଗୋବିନ୍ଦ [illegible] [illegible] ଆଡ଼କୁ

ଥରେ ବୁଲି ଗଲା, ତାର ହଠାତ ନଜର ପଡ଼ିଲା ଗୋଟାଏ ବୁଦା ଉପରେ । ଗୋଟାଏ ଲୋକ ସେଥିରୁ ବାହାରି ପଳାଇ ଯାଉଛି । ଜୀବନ ଦୁଇଗୁଣ ବେଗରେ ଡିଅଁ ମାରି ତାର ଦୁଇ ସବଳ ହାତରେ ଲୋକଟିର ବେକକୁ ଚିପି ଧରିଲା । ଲୋକଟି ପଳାଇ ଯିବାକୁ ଖୁବ୍ ଚେଷ୍ଟା କଲା, କିନ୍ତୁ ଜୀବନର ମୂଷଳ ହାତରୁ ରକ୍ଷା ପାଇବାର ବାଟ ତାର ନଥିଲା । ଜୀବନ ଦୁଇ ତିନୋଟି ଭୁଷି ମାରିଲା । ତାର ନାକରୁ ଅନର୍ଗଳ ରକ୍ତ ବୋହିବାକୁ ଲାଗିଲା । ସେ ସେଇଠାରେ ଚେତାଶୂନ୍ୟ ହୋଇ ପଡ଼ି ରହିଲା ।

ଅଶୋକ ବାବୁ ଏବଂ ଅଳକା ଦେବୀ ଆଶ୍ଚର୍ଯ୍ୟହୋଇ ଧାଇଁ ଆସିଲେ ।

ଜୀବନ, ଡକାୟତଟାକୁ ଟେକିନେଇ କହିଲା, "ଭିତରକୁ ଚାଲନ୍ତୁ ।

ଭିତରେ ପହଞ୍ଚି ଜୀବନ କହିଲା, "ପୋଲିସକୁ ଫୋନ୍ କରନ୍ତୁ ।"

ଅଶୋକ ବାବୁ ଫୋନ୍ କରି ଫେରି ଆସିଲେ । କିଛି ସମୟ ପରେ ଗୋଟିଏ କନେଷ୍ଟବଲର ନେତୃତ୍ୱରେ ଦୁଇଜଣ ପୋଲିସ ଆସି ଦସ୍ୟୁଟାକୁ ନେଇଗଲେ ।

ଅଶୋକ ବାବୁ କହିଲେ, "ଧନ୍ୟ ତୁମେ ଜୀବନ । ଯାହା ମୁଁ ଏତେବର୍ଷ ଲାଗି କରି ପାରି ନଥିଲି ତା ତୁମେ ଖୁବ୍ ଅଳ୍ପଦିନ ମଧ୍ୟରେ କରିପାରିବ ।"

"ନାଁ ବା, ଏପରି କିଛି ନାହିଁ । ସବୁ ତାଙ୍କ ସତ୍ତ୍ୱ । ହଉ ମୁଁ ଯାଉଛି । ନମସ୍କାର ।" କହି ଜୀବନ ବିଦାୟ ନେଲା ।

ଅଳକା ଦେବୀ ଏବଂ ଅଶୋକ ବାବୁ ବୋକାଙ୍କ ପରି ଜୀବନର ଗତିପଥକୁ ଅନାଇ ରହିଲେ ।

—୧୨—

ହୋଟେଲର ମ୍ୟାନେଜର ତାଙ୍କୁ ଦେଖି ଭାରି ଖୁସି ହେଲା ; ଏବଂ ହସି ହସି କହିଲା, "ସହର ବୁଲା ତ ହେଲା ଏଥର ଅଜ-ସ୍ଥଳରେ ବସାକୁ ଯିବା ।"

ବସା କେଉଁଠା ପାଠକ, ପାଠକମାନେ ଜାଣି ପାରୁଥିବେ । ମୋର ଆଉ ଅଧିକ ଲେଖିବା ଦରକାର ନାହିଁ ।

ତା ପରେ ସେ ଧନ ସଙ୍ଗରେ ସମସ୍ତେ ଫେରି ଆସିଲେ ଗୁପ୍ତ-ଘରକୁ । ଜୀବନ ହ୍ରଭୁତ୍ତ ଗୋଟାଏ ମସ୍ତବଡ଼ ଧନୀର ଧନ ସମ୍ପତ୍ତି ସବୁ ଠିକ୍ କରି ଆସିଛନ୍ତି ଜାଣି ସମସ୍ତେ ଯାହା ଖୁସି ହେଲେ ହେଲେ, କିନ୍ତୁ ସବୁଠାରୁ ବେଶୀ ଖୁସି ହେଲା ଜମିଦାର ନାତିଟି ।

ତିନି ବନ୍ଧୁ ହସି ଆଉ ହୋଇ ଚାଲିଲେ । କାଲେ କେଉଁଠି ଧରା ପଡ଼ିଯିବେ । ତେବେ ସବୁ ଶେଷ । ବର୍ତ୍ତମାନ କଥା ରହିଲା । ବଣ୍ଟନ ଖଣ୍ଡିବା ।

ତା ପରଦିନ । ଦିନ ୯ଟା ବାଜିଲାଣି । ରବି ଆସି ସୁର, ନରଙ୍କୁ ଉଠାଇ ଦେଲା । ତିନିହେଁ ନିତ୍ୟକର୍ମ ସାରିବାକୁ ଗଲେ । ନିତ୍ୟକର୍ମ ପରେ ଜଣେ ଦସ୍ତୁରୀ ଆସି କହିଲା, "ତୁମକୁ ଜମିଦାର ଡକାଇ ପଠାଇଛନ୍ତି ।"

ନର ଭୟ ଗଳାରେ କହିଲା, "ସୁରଭାଇ ଜମିଦାର ପୁନର୍ବାର ଡାହ୍ଁକୁ ଡକାଇଲେ । ମୁଁ ତ 'ଡାହ୍ଁ' କିଛି ବୁଝି ପାରୁ ନାହିଁ । କ'ଣ ଆମକୁ ସନ୍ଦେହ କରୁଛନ୍ତି ।"

ଦେଖାଯାଉ କ'ଣ ହେଉଛି । ସୁର କଣାଇଲା । ରବି କହିଲା, "ତେବେ ଶୀଘ୍ର ଚାଲ ।"

ତଳହେଁ ଯାଇ ଦେଖିଲେ ଘରଟି ସବୁ ଦସ୍ୟୁମାନଙ୍କ ଦ୍ୱାରା ପୂର୍ଣ୍ଣ । ଜମିଦାର ପଲଙ୍କ ଉପରେ ଶୋଇଛନ୍ତି । ମଦପିଅ ଚାଲିଛି, ନାଚ ହେଉଛି । "ବା, ବା, ପା ଚାଲିଯା" ଶବ୍ଦରେ ଦ୍ୱାର ଘର ପୂରି ଯାଉଛି । ସମସ୍ତଙ୍କ ହାତରେ ମଦ ଗ୍ଲାସ, ସମସ୍ତେ ମଦ ନିଶାରେ ଢୁଳାଉଛନ୍ତି । ସମସ୍ତଙ୍କର ଦୃଷ୍ଟି ରହିଛି ନର୍ତ୍ତକୀ ଅଡ଼କୁ । ଏମାନଙ୍କୁ ଦେଖି କିଛିକ୍ଷଣ ପାଇଁ ସବୁ ବନ୍ଦ ହୋଇଗଲା ।

ଜମିଦାର ନିଜ ଆସନରୁ ଉଠି ଆସି ତିନିଙ୍କୁ ତିନିଟା ଆସନରେ ବସାଇ ଦେଲେ ଏବଂ ପଚାରିଲେ, "କାଲି ତଳହେଁ ଯାଇଥିଲ ସହର ବୁଲି, ମୋ ପାଇଁ କ'ଣ ଆଣିଛ ?"

ଏ ପ୍ରଶ୍ନ ଶୁଣି ଏମାନେ ଟିକିଏ ନିଶ୍ଚିନ୍ତ ହେଲେ । ସୁର ଉଠି ଠିଆ ହେଲା ଏବଂ ସବୁ କଥା କହିବାକୁ ଆରମ୍ଭ କଲା ।

ସମସ୍ତେ ସନ୍ତୁଷ୍ଟ ନୟନରେ ତା ଅଡ଼କୁ ଅନାଇ ରହିଲେ ।

ସେ କହି ଚାଲିଲା, 'ଅଶୋକ ବାବୁଙ୍କୁ ତ ସମସ୍ତେ ଚିହ୍ନନ୍ତି । ତାଙ୍କର ସ୍ନେହର କନ୍ୟା ଆମ ପାଖେ ବନ୍ଦିନୀ । ସେହି ଅଶୋକବାବୁଙ୍କ ଘରକୁ ଲଗି ଅଛି ଗୋଟିଏ ବଣିକର ଘର ଅଛି । ତାର ଅଗଣନା ଧନ ସମ୍ପତ୍ତି । ହିସାବ ଦେବାକୁ ଗଲେ ବର୍ଷ ବର୍ଷ ଲାଗିଯିବ । ମୁ କହୁଛି ଯଦି ମତେ କିଛି ସାହାଯ୍ୟ ଦିଅ ଯାଆନ୍ତା, ମୁଁ ଏହି ଦୁଇ ଦିନ ମଧ୍ୟରେ ତାର ଧନ ସମ୍ପତ୍ତି ସବୁ ଏଠାକୁ ବୋହି ଆଣନ୍ତି ଏବଂ ଆସନ୍ତା ଅମାବାସ୍ୟାକୁ ମଙ୍ଗଳ ମଙ୍ଗଳସି କରନ୍ତେ ।"

ମଦ ନିଶା ତ ଛୋଟିନି । ଭଲ ମନ୍ଦ ବୁଝୁଛି କିଏ ? ଜମିଦାର କହିଲେ, 'ତା ହେଲେ କାଲି ବାହାରି ପଡ଼ ।"

ସୁର କହିଲା, 'ନା ଆଜ୍ଞା, ଆଜି ଦୁଇ ଦିନ ଯାଉ ।'

ଜମିଦାର 'ହରି' ବାବୁ ପଲଙ୍କ ଉପରେ ବସିଲେ । ପୁଣି ଚାଲିଲା ନାଚ । ବିଶ୍ରାମ ନାହିଁ । ସମସ୍ତଙ୍କ ଦୃଷ୍ଟି ପଡ଼ୁଛି ସେଠାରେ ।

ଜନାର୍ଦ୍ଦନ ଚୁପ୍ ଚାପ୍ ଉଠି ଚାଲି ଆସିଲେ । ଧୀରେ ଧୀରେ ଚାଲିଲେ ବଙ୍ଗଳାଗାରକୁ ।

ସମସ୍ତେ କାର୍ଯ୍ୟବ୍ୟସ୍ତ । ଜନାର୍ଦ୍ଦନ ବାହାରେ ଲୁଚି ରହି ଝରକା ବାଟେ ଅନାଇ ସବୁ ଶୁଣୁଥିଲେ, ଉପର ବଷାକୁ ବାଷ୍ପମାନ ଛଅର ବଢୁଛନ୍ତି ।

ଘଣ୍ଟାକ ମଧ୍ୟରେ ସୁର ସବୁ ବୁଝିଗଲା । ସେମାନଙ୍କ କଥା ଶୁଣି, ଚୁପ୍ ଚାପ୍ ଚାଲି ଆସିଲା । କେହୁ ଜାଣିଲେ ନାହିଁ । ସେତେବେଳେଯାଏ ନାଚ ବନ୍ଦ ହୋଇ ନାହିଁ । ମଦ ନିଶାରେ କେତେକ ନିଜ ନିଜ ଆସନ ଗୁଡ଼ିକ ତଳେ ପଡ଼ିଛନ୍ତି । ଜମିଦାର ଚେଷ୍ଟାରେ ଏତ ଗଳାଣି । ନର୍ତ୍ତକୀ ମଧ୍ୟ ନାଚି ନାଚି ପଡ଼ିଗଲା ।

ତାପରେ ଜନାର୍ଦ୍ଦନ ବାହାରି ଆସିଲେ ।

ସେ ଦିନ ରାତି ନିସ୍ତବ୍ଧ । ଜଗତ ସୁପ୍ତ । ଜନ୍ତୁମାନେ ମଧ୍ୟ । କିନ୍ତୁ ନିଦ ନାହିଁ ଜନାର୍ଦ୍ଦନଙ୍କୁ ।

ଠିକ୍ ରାତି ୧୨ଟା । ନର କହିଲା, "ରଞ୍ଜବାବୁ ଠିକ୍ ଅଛି" । ରାତ ଅନ୍ଧାରରେ ସମ୍ମତି ଜଣାଇଲା ।

ତା ପରେ ଜନାର୍ଦ୍ଦନ ଆଗକୁ ଚାଲିଲେ । କୁଆଡେ ଯେ ଚାଲିଛନ୍ତି ତାଙ୍କୁ ଜଣା । ବାଟରେ ବଙ୍ଗଳାଗାରଟା ପଡ଼ିଲା । ରାତି ଚାରି ବାହାର ଦ୍ୱାର କବାଟ ଖୋଲି ଦେଲା । ରାତି ଏବଂ ନର ଦୁଆର ମୁହଁରେ ଜଗି ରହିଲେ । ଭିତରକୁ ପଶିଲା ସୁର ଡରି ଡରି ।

ହାତରେ ଗୋଟେ ଟର୍ଚ୍ଚ ଜଳୁଛି । ଅନ୍ଧାରରେ ବାଟ କଢ଼ାଉଛି । ଗୋଟାଏ ଅଲମାରୀ ପାଖକୁ ସୁର ଆସିଲା । ଶୀଘ୍ର ଶୀଘ୍ର

ତାମ ଯାଉବାକୁ ହେବ । ସ୍ତ୍ରୀ ଲୋକଙ୍କ ପ୍ରବେଶ ଦ୍ୱାରଟା ମେଲା । ଏଣିକି ତେଣିକି ଖୁଣ୍ଡି ସୁର ଅଲମାରି ଖୋଲିଲା । ଔଷଧ ମଧ୍ୟ ମିଳିଲା ନାହିଁ । ଟଙ୍କ ସବୁଆଡ଼ ବାହାର କଲା ନୋଳଅ ଔଷଧଟାଏ । ଟେବୁଲ ଉପରେ ଧୀର କରି ରଖିଲା । ଆଉ ଗୋଟାଏ ଖାଲି ବୋତଲରେ ପାଣି ଆଣିଲା । ସେଇ ନେଲି ଔଷଧରୁ ଟୋପାଏ ପକାଇଲା । ତା ପରେ ପୋଟାସ୍ ବାହାର କରି ପାଣିରେ ମିଶାଇଲା । ନାଇଟ୍ରିକ ଏସିଡରୁ ଦୁଇ ତିନି ଟୋପା ପକାଇଲା, ସଲଫର ଡ଼ାଇଓକ ସାଇଟ୍ ଦୁଇଗ୍ରାମ୍ ମିଶାଇବାରୁ ଏକ ପ୍ରକାର ଉଜ୍ଜ୍ୱଳ ଗ୍ୟାସ ବାହାରିଲା । ତାକୁ ଆଉ ଗୋଟିଏ ଟେଷ୍ଟ ଟିଉବ୍‌ରେ ଭରିଭ ଟିପି ବନ୍ଦ କଲେ । କିଛି ସମୟ ପରେ ଗ୍ୟାସଟି ଧଳା ରଙ୍ଗର ହୋଇଗଲା । ସୁର ଆନନ୍ଦରେ ନାଚି ଉଠିଲା, ସବୁ ସରିଲା । ତଥାପି ହାତ ଥରୁଥାଏ । ଦେହରୁ ଝାଳ ଗମ ଗମ ହୋଇ ବୋହି ଯାଉଥାଏ । କାଳେ କିଏ ଆସି ଦେଖିବ । କିନ୍ତୁ ଭୟ କରିବାର କୌଣସି ବେଳ ଏ ନୁହେଁ । ଯେ ଯେଉଁଠି ରହିବାର କଥ ତାକୁ ସେଇଠି ରଖିଲା ।

ଅନ୍ଧାରରେ ଅଲମାରି ବନ୍ଦ କରିବାକୁ ଯାଉଛି ହଠାତ୍ ସ୍ତ୍ରୀ ଲୋକଙ୍କ ପ୍ରବେଶ ଦ୍ୱାର ପାଖରେ ଶବ୍ଦଟି ଶୁଭିଲା, "ଘର ଭିତରେ କିଏ ?"

ସୁର କିଛି ନ କହି ପଳାଇ ଯିବାକୁ ବସିଲା ବେଳେ ତା ପଛ ଅଡ଼ୁ କିଏ ଜଣେ ଭିଡ଼ ଧରିଲା । ସୁର କଣ କରିବ କିଛି ସ୍ଥିର ପାଇଲା ନାହିଁ । ହଠାତ୍ ତାର ପାଟି ଭିଡ଼ ଧରିଲା ଯେପରି ସେ ପାଟି କରି ନ ପାରେ । ପକେଟରୁ ରୁମାଲ କାଢ଼ି ତାର ମୁହଁ ବାନ୍ଧି ଦେବାକୁ ଲାଗିଲା । ପ୍ରଥମ ଥର ପାଇଁ ତା ଅଣ୍ଟା ବଳ ପଳା । ସେ ଲୁଚି ପାଖର କବାଟକୁ ଧରି ଟାଣି ନେବାକୁ ବସିଛି । ସୁର ହାତ ମାରି ଛାଡ଼ି

ପାରିଲା ସେ ଜଣେ ସ୍ତ୍ରୀ ଲୋକ । ସ୍ତ୍ରୀ ଲୋକଙ୍କର ଯେ ଏତେ ବଳ ହୋଇପାରେ ସେ ବିଶ୍ୱାସ କରି ପାରୁ ନାହିଁ । କିନ୍ତୁ ସଙ୍କଟରେ ପଡି ସେ ନିଶ୍ୱାସ ବନ୍ଦ ହେବାକୁ ବି ବାଧ୍ୟ ହେଲା । ତାର ସବୁ ବଳ ପ୍ରୟୋଗ କରି ନା ପାରିଲେ ରୁମାଲ ବାନ୍ଧି ଦେଲା ଏବଂ ତାକୁ ତା ଲଗାରେ ବାନ୍ଧି ପକାଇ ,ଦେଇ ଷ୍ଟେଥୋସ୍କୋପ୍ ନେଇ ଚାଲି ଆସିଲା । ତାହାରୁ କବାଟ ବନ୍ଦ ହୋଇଗଲା ।

ତା ପରଦିନ ଗୁପ୍ତଘରେ ମହାମେଳ ଉଠିଛି । କାଲି ରାତିରେ ଅମର ଘରେ ପଶି କିଏ ସୁମତିକୁ ବାନ୍ଧି ପକାଇଛି । ଘଟଣା କଣ ଜାଣିବାକୁ ରବି ଏବଂ ସୁର ଦୌଡ଼ିଗଲେ । କଥା ଏହି ଯେ କାଲି ରାତିରେ ସୁମତି ଦେବୀ ତାହାଙ୍କ ନେଇଁଣି ବନ୍ଦିନାଗାରକୁ ଆସିଥିଲେ । ସେ ଘରେ କେହି ଜଣେ ପଶି ଚୋରି କରୁଥିଲା । ସୁମତି ଦେବୀ ତାକୁ ଦେଖି ଆକ୍ରମଣ କଲେ, କିନ୍ତୁ ପାରିଲେ ନାହିଁ । ପାଟି କରିବା ପୂର୍ବରୁ ତାଙ୍କ ପାଟି ବନ୍ଦ ହୋଇ ଯାଇଥିଲା ସେ ଲୋକଟା ଦ୍ୱାରା । ତାପରେ ଲୋକଟା କେଉଁ ଆଡେ ଗୁଳିଗଲା । ଅମର ଭିତରେ ପୁଣି ଏପରି କିଏ ବାହାର ସ୍ ଛନ୍ତି । ବାପ ଘରେ ପୁଣି ମିଳିବାର ନାହିଁ । ଏ ବିପଦ ଦୃଷ୍ଟି ସ୍ଥାନରେ ରହି ପୁଣି ବିପଦକୁ ହାତ ବଢାଉଛୁ । ତାର ଅଯୁକ୍ତ ପୂରିଲଣି । ଦେଖାଯାଉ ।

ସମସ୍ତଙ୍କୁ ସନ୍ଧ୍ୟାକୁ ଡକରା ହେଲା । ସନ୍ଧ୍ୟା ଗୃହ ଚୋରମାନଙ୍କ ଦ୍ୱାରା ପୂର୍ଣ୍ଣ । ରବି, ସୁର ଏବଂ ନର ଯାଇ ନିଜ ନିଜ ଆସନରେ ବସିଲେ । ଜମିଦାରଙ୍କ ପାଖରେ ସୁମତି ଦେବୀ ବସିଚନ୍ତି । କିନ୍ତୁ ସମସ୍ତ ପାଇଁ ଘରଟି ନିସ୍ତବ୍ଧ ହୋଇଗଲା । ସମସ୍ତଙ୍କ ମନରେ ଛନକା ପଶିଲା । ସମସ୍ତେ ହସିବାକୁ ଲାଗିଲେ ତାଠେଲ ସୁମତି ଦେବୀ

ସେମାନଙ୍କ ନାମରେ କହି ଦେବେ । ତେବେ ସର୍ବନାଶ । ଶୂଳୀ, ଦ୍ୱୀପାନ୍ତର ଦଣ୍ଡ । କିନ୍ତୁ ପ୍ରମାଣ ଦେବା ସବୁ ବର୍ଣ୍ଣନା କରିସାରି କହିଲେ, 'ମୁଁ ଅନ୍ଧାରରେ ତାହାକୁ ଚିହ୍ନି ପାରି ନାହିଁ ।"

ଏକଥା ସମସ୍ତଙ୍କ ମନରେ ଆଶ୍ୱାସନା ଆସିଲା ।

କିଛି ସମୟ ପରେ ଜମିଦାର ଉଠି କହିଲେ, 'ସେ ଦସ୍ୟୁକୁ ଖୋଜି ବାହାର କରିବା ନିତାନ୍ତ ଦରକାର, କିନ୍ତୁ ଏ ଭାର କିଏ ନେବ ? ସେମିତିଆ ଲୋକ ହାତରେ ଏ ଭାର ନ ରହିଲେ ମହା ବିପଦ । ନିଶ୍ଚୟ କେହି ପୋଲିସ ଲୋକ ଆମ ଭିତରେ ରହିଛି । ବିପଦ ଅସ୍ତେ ଅସ୍ତେ ଘନେଇ ଆସୁଛି ।"

ସମସ୍ତେ ବହୁତ ବୁଦ୍ଧି ପାଞ୍ଚିଲେ । ଶେଷକୁ ମ୍ୟାନେଜର କହିଲେ, "ସୁର ନରଙ୍କ ଉପରେ ଏ ଭାର ଦିଆଯାଉ । ସେମାନେ ଏ ବଦମାସକୁ ବାହାର କରିବେ ।" ସମସ୍ତେ ସମ୍ମତି ଜଣାଇଲେ, ଜମିଦାର ମଧ୍ୟ । ଶେଷକୁ ଅନ୍ୟ ବିଷୟରେ କିଛି ଆଲୋଚନା ହୋଇ ସଭା ଭଙ୍ଗ ହେଲା ।

ସୁର ନର ଅଉ ଚୋରକୁ ପାଇଲେ ନାହିଁ । ଅମାବାସ୍ୟା ନିକଟରୁ ନିକଟତର ହେବାକୁ ଲାଗିଲା ।

ଚତୁର୍ଥ ଦିନ ରାତି । ରଘୁ, ସୁର, ଏବଂ ନର ଜମିଦାରଙ୍କଠାରୁ ଅନୁମତି ଆଣି ଦଶଜଣ ଲୋକଙ୍କୁ ଠିକ କଲେ । ରାତି ନଅଟା ବେଳକୁ ଗୋଟି ଗୋଟି ହୋଇ ସମସ୍ତେ ଉଠିଲେ । ରାତି ବାରଟା । ସବୁଆଡ଼ ନିସ୍ତବ୍ଧ । ଅନ୍ଧାର ସଡ଼ରେ ତେର ଜଣ ହାତରେ ଛୁରୀ ଏବଂ ପିସ୍ତଲ ଧରି ଲୁଚିଛନ୍ତି । ସମସ୍ତେ ଆସି ପହଞ୍ଚିଲେ ଗୋଟାଏ ମସ୍ତବଡ଼ କୋଠାର ସମ୍ମୁଖରେ । ସମସ୍ତେ ସେ କୋଠା ଦେଖି ଆଶ୍ଚର୍ଯ୍ୟ ହୋଇଗଲେ ।

ସୁବ ନଳଙ୍କ ଉପରେ ସମସ୍ତେ ଝୁଲି ଘୁସି । ଫାଟକ ଡେଇଁ ସମସ୍ତେ ଗୋଟି ଗୋଟି ହୋଇ ତା ଭିତରକୁ ପଶିଲେ ।

ଅଶୋକବାବୁ ବଡ଼ ଚଲାଖ । ସବୁ ଘରର କବାଟ ଅଙ୍ଗଣାର ଦେଇଚନ୍ତି । ପୋଲିସମାନଙ୍କୁ ଠିକ୍ ସ୍ଥାନରେ ସନ୍ଧ୍ୟା ବେଳୁ ନେଇ ଦେଇଛନ୍ତି ।

ଆଗରେ ଦଶଜଣ ଚୋର ପଛରେ ତିନିଜଣ । ସମସ୍ତେ ଭିତରକୁ ପଶିଲେ । ଖୁବ୍ ଧୀରେ ଧୀରେ ଗୁହଂଅଟାକୁ ଅନାଇଁ ଅନାଇଁ ପଶିଥିଲେ । ଘର ଭିତରକୁ ପଶି ଉପର ମହଲାକୁ ଉଠିଲେ । ଅଶୋକ ବାବୁଙ୍କ ଶୋଇବା ଘରକୁ । ଦୁଆର ମୁହଁରେ ସମସ୍ତେ ପହଞ୍ଚିଲେ । ରବି ଚୁପ୍ ଚୁପ୍ କରି କହିଲା, "ଧୀରେ ଧୀରେ ପଶ । ଏଇ ଘରେ ଶୋଇଛି ଡାକୁ ପଲଙ୍କ ଉପରେ । ମୁଣ୍ଡ ତଳୁ ସାବଧାନତାର ସହିତ ଚାବି ନେବ । ଘରର ଗୋଟାଏ କଣରେ ଲୁହା ସିନ୍ଦୁକ ଥୁଆ ହୋଇଛି । ଜିନିଷପତ୍ର ନେଇ ଚାଲି ଆସିବ । ଆମେ ଏଇଠି ଜଗିବୁ ।"

ତିନିବନ୍ଧୁ ପହରା ଦେଲେ । ଅନ୍ୟ ଦଶଜଣ ଭିତରକୁ ପଶିଲେ । ସମସ୍ତେ ପଶି ସାରିଲେ, ଜଣକ ହାତର ଟର୍ଚ୍ଚ ଲାଇଟ୍ ଜଳି ଉଠିଲା । ସେମାନେ ଦେଖିଲେ ଜଣେ ବୁଢ଼ା ପଲଙ୍କ ଉପରେ ଶୋଇ ଘୁଙ୍ଗୁଡ଼ି ମାରୁଛି । ସମସ୍ତଙ୍କ ମୁହଁରେ ହସ ଫୁଟି ଉଠିଲା । ସେମାନଙ୍କ ମଧ୍ୟରୁ ଜଣେ ତକିଆ ତଳୁ ଚାବି ଆଣିଲା, ଧୀରେ କରି ସିନ୍ଦୁକ ଖୋଲିଲା, କିନ୍ତୁ ଏ କଣ ? ସେଥି ଭିତରେ କିଛି ନାହିଁ । ଚିତ୍କାର କରି ଉଠିଲେ । ହଠାତ୍ ପଛକୁ ଚାହିଁ ଦେଖିଲେ କବାଟ ବନ୍ଦ ଏବଂ ପୁଲିସମାନଙ୍କ ଦ୍ୱାରା ଘରଟି ପୂର୍ଣ୍ଣ ହୋଇଛି । ସବୁ ପୁଲିସଙ୍କ ପିସ୍ତଲର ନଳ ସମସ୍ତଙ୍କ ଛାତି ଉପରେ ।

ଜଣେ ପୁଲିସ ଗମ୍ଭୀର ଭାବରେ କହିଲା, "ହୁସ ପିସ୍ତଲ ଯାହା କିଛି ଅଛି ବାହାର କରି ତଳେ ଥୋଇ ଦିଅ ନୋହିଲେ ପ୍ରାଣ ବାୟୁ ଗୁଳିଯିବ ।"

ଦସ୍ୟୁମାନେ କିଛି ସମୟ ପର୍ଯ୍ୟନ୍ତ ଚିଆ ହୋଇ ରହିଲେ । ତାପରେ ସେମାନେ ପୁଲିସମାନଙ୍କ ଉପରକୁ ଡେଇଁ ପଡ଼ିଲେ । ପୁଲିସମାନେ ଏଥି ପୂର୍ବରୁ ଖୁବ୍ ସତର୍କ ଥିଲେ । ସେମାନେ ଏହି ସମୟରେ ପଛକୁ ଦୁଇଁ ଗଲେ । ଏମାନେ ଭୁଷଭାଷ ହୋଇ ତଳେ ପଡ଼ିଗଲେ । ଆଖି ପଲକ ମାତ୍ରକେ ସବୁ ଦସ୍ୟୁ ବନ୍ଦୀ ହେଲେ । ସମସ୍ତଙ୍କୁ ହାତକଡ଼ି ପିନ୍ଧାଇ ଦିଆଗଲା । ତାପରେ ଗୋଟାଏ ବଡ଼ ଲରୀରେ ସମସ୍ତଙ୍କୁ ବସାଇ ଜେଲକୁ ନିଆଗଲା ।

ଅଶୋକବାବୁ ଏବଂ ଅଳକା ଦେବୀ ରଞ୍ଜିବନ୍ଧୁଙ୍କୁ ଧନ୍ୟବାଦ ଦେଲେ । ସେମାନଙ୍କ ଆଖିରୁ ଆନନ୍ଦାଶ୍ରୁ ବହିବାକୁ ଲାଗିଲା ।

ସୁର କହିଲା, "ଅଶୋକବାବୁ ସେପରି ହେଲେ ଚଳିବ କି ? ବର୍ତ୍ତମାନ ତୁମକୁ ଚୋର ସାଜିବାକୁ ହେବ ଆମ ସଙ୍ଗରେ । ଏକଥା ଯେପରି ପ୍ରକାଶ ନ ହୁଏ । ସମସ୍ତ ଚୋର ଧରା ହୋଇ ସାରିଲା ପରେ ଏକଥା ବାହାରିବ । ବର୍ତ୍ତମାନ ନିଅ ଜଣ ପୁଲିସଙ୍କୁ ଚୋରଙ୍କ ପୋଷାକ ପିନ୍ଧାଇ ଏବଂ ନିଜେ ପିନ୍ଧି ଦସ୍ୟୁ ଗୃହକୁ ଯିବାକୁ ହେବ । ସେଠାରେ ଜମିଦାରଙ୍କୁ ହତ୍ୟା କରି ସମସ୍ତଙ୍କୁ ଉଦ୍ଧାର କରିବା ।" ଅଶୋକବାବୁ ରାଜି ହୋଇ ଗଲେ । ସବୁ ଯୋଗାଡ଼ କରି ସେମାନେ ବାହାରି ପଡ଼ିଲେ ହୋଟେଲ ଅଭିମୁଖରେ । ସେଠାରେ ଦେଖି ଚୋରକୁ ସେଇ ଚୋର । ଧନ ସମ୍ପତ୍ତି ମଧ୍ୟ କମ୍ତି ପାଖରେ ନାହିଁ । ମ୍ୟାନେଜଙ୍କର ଦେଖି ଭାରି ଖୁସି ହୋଇଗଲା ।

ସୁର କହୁଥିଲା ଯେ ସକାଳ ହେଲେ ବନ୍ଦୀ ଅବସ୍ଥାରେ ମ୍ୟାନେଜରଙ୍କୁ ଗିରଫ କରିବାକୁ । ଅଶୋକ ବାବୁ ତାର ବ୍ୟବସ୍ଥା ମଧ୍ୟ କରି ଯାଇଥିଲେ ।

ସମସ୍ତେ ଆସିଲେ ଗୁପ୍ତଘର ମଧ୍ୟକୁ ।

ତା ପର ଦିନ ୧୨ଟା ବେଳକୁ ଶୁଣି ପାରିଲେ ଯେ ମ୍ୟାନେଜର ଗିରଫ ହୋଇଛି । ସେମାନଙ୍କର ଆଶା ସଫଳ ହୋଇଛି ଦେଖି ଆଶ୍ୱସ୍ତ ହେଲେ । ଅଶୋକବାବୁଙ୍କର ଭାରି ଇଚ୍ଛା ତାଙ୍କର ସ୍ନେହର କନ୍ୟାକୁ ଦେଖିବେ ବୋଲି । ଗଡରେ ଯିବାକୁ ଠିକ୍ ହୋଇ ରହିଲେ । ସମସ୍ତେ ଏପରି ଭାବରେ ଥାଆନ୍ତି ଯେ, ଜମିଦାର ତାହାଙ୍କୁ ଅବିଶ୍ୱାସ କରି ପାରିବ ନାହିଁ । ସମସ୍ତଙ୍କ ଗୁଳି ଚଳନ ଠିକ୍ ଶ୍ରେଣୀର ପରି । ଜମିଦାର କିଛି ଜାଣିପାରିଲେ ନାହିଁ । ଅଙ୍କ ସେ । ନା, ନା ଅଙ୍କ ହେଉଥିଲେ ଭଲ ହୁଅନ୍ତା । ବୋକା, ଛାଡ଼ା ହେଲେ ଠିକ୍ ହେବ । ଯାହାହେଉ ଜମିଦାର ସୁର ଛୁଆଙ୍କ ଉପରେ ଭାରି ଖୁସି । ସେମାନଙ୍କୁ ତୁହାକୁ ତୁହା, ତାଙ୍କ କୁଶଳ ପ୍ରଶ୍ନ ପଚାରୁଛି ।

ତଥାପି ତା ମନରେ ସନ୍ଦେହ ଆସୁଛି । ସାପକୁ ଆଣି ଘରେ ରଖିଲା ପରି ତାର ମନେ ହେଉଛି । ତାର ଅନୁତାପ ଆସୁଛି, ସତେ ଯେପରି ଗୋଟାଏ ମସ୍ତବଡ଼ ଭୁଲ କରି ପକାଇଛି । ତାହାଙ୍କୁ କଣ କରିବ ? କ୍ଷମା ଦେବ କିଏ ? ଉଦ୍ଧାର ପାଇବ ବା କିପରି ? ଭାବୁଛି ସମସ୍ତଙ୍କୁ ମୁକ୍ତି ଦେବ । ସମସ୍ତଙ୍କଠାରୁ କ୍ଷମା ମାଗିବ । କିନ୍ତୁ କ୍ଷମା ନ ଦେଇ ଯଦି ସେମାନେ ଅପମାନ ଦିଅନ୍ତି, ତେବେ ତ ସହି ପାରିବ ନାହିଁ ସେତେବେଳେ ଆତ୍ମହତ୍ୟା, ଭୀଷଣ ! ସୋଡ଼ାସିୟୁମ ସାଇନାଇଡ଼୍ ପାଟିରେ ଦେବାକୁ ହେବ । ତାପରେ ସବୁ ଶେଷ, କେହି କହିବାକୁ ନଥିବେ ।

ପୁଣି ଭାବେ, "ତାର ଏ ଦୁର୍ବଳତା କାହିଁକି ? ଯାହାର ଏତେ ସରଞ୍ଜାମ ଅଛି । ବିଖ୍ୟାତ ବିଖ୍ୟାତ ଦସ୍ୟୁ ଯାହାର ଅଧୀନରେ ତାର ପୁଣି ମୃତ୍ୟୁ । ଅସମ୍ଭବ । ତାକୁ କେହି ମାରି ପାରିବେ ନାହିଁ । ସାମାନ୍ୟ ମନୁଷ୍ୟ ତାର କଣ କରିବେ । ପୁନର୍ବାର ତା ମୁଣ୍ଡରେ ଘଣେ ସୁମନ୍ତକୁ ସେଦିନ କିଏ ଆକ୍ରମଣ କରିଥିଲା । ସେ ଯୁଆ ଭିତରେ କେଉଁଠି ଅଛି, କାହିଁ ମୁଁ ତ ଆଜି ପର୍ଯ୍ୟନ୍ତ ଜାଣି ପାରିଲି ନାହିଁ । ପୁରି ନର ତ ଆଜି ଯାଏ କାହିଁ ଚୋରକୁ ଧରାଇ ଦେଇ ପାରିଲେ ନାହିଁ । ତେବେ ସେମାନେ ତ କିଛି ଷଡ଼ଯନ୍ତ୍ର କରୁନାହାନ୍ତି ? ଏ ପୁରି ନର କିଏ ? ସେମାନେ କଣ ମୋ ବିପକ୍ଷରେ ? ତାଙ୍କର ଗତି ବିଧି କିଛି ଜଣା ଯାଉ ନାହିଁ । ଏବେ ଚୋରମାନଙ୍କ ଗତିବିଧି କପର ଅନ୍ୟ ଅଡ଼କୁ ଗତି କରୁଛି । ବେଳେ ବେଳେ ସେମାନେ ଅବାଧ ହେଉଛନ୍ତି ? ମ୍ୟାନେଜର କାହିଁ ? ସେ ତ ଆଉ ଆସୁନାହିଁ । କଣ ହେଲା ତାର, ଆଜି ଗୁଡ଼ କାଲି ଅମାବାସ୍ୟା । ତେବେ କଣ ହେବ । କିନ୍ତୁ...କାହାନ୍ତି କିଏ ? ମୋର ସହାୟକ କାହାନ୍ତି ? କିଏ ମୋତେ ସାହାଯ୍ୟ କରିବ ? ଏଇ ପୁରି ନର । ସେମାନେ ମୋତେ ରକ୍ଷା କରି ପାରିବେ ତ ? ମୁଁ...ହଁ, ମୁଁ ବଡ଼ ଭୁଲ କରିଛି । ମୋର ଭୁଲର କଣ ପ୍ରାୟଶ୍ଚିତ ନାହିଁ ? ଭଗବାନ କ୍ଷମା କର ମୋତେ, ଉଃ ମରିଗଲି । ଏ କଣ । କିଏ ଜଣେ କାନରେ କହି-ଯାଉଛି ବନ୍ଦୀ ସମସ୍ତେ ଅଛନ୍ତି । ସମସ୍ତଙ୍କୁ ମୁକ୍ତ ଦେଇ କ୍ଷମା ମାଗ ।"

ଜମିଦାର ଉଠେ, କିନ୍ତୁ ଗୋଡ଼ ଟଳେନା । "ସାମାନ୍ୟ ନାଙ୍ଗ ସେମାନେ ତାର କଣ କରିବେ ? ଏଇ ଭୟକୁ ସେ ଡରିବା କେବେ ନୁହେଁ । ସେମାନଙ୍କୁ ସେ ହତ୍ୟା କରିବ । ଯାହା ପ୍ରତିଜ୍ଞା କରିଛି ତାହା ପୂରଣ କରିବ ।" ଡାକିଲା, 'ରକ୍ଷୀ' ।

ରକ୍ଷୀ ଅପି ସନ୍ଧୁଷ୍ଟିଙ୍କ ।
ଆଦେଶ ହେଲା ମଦ ଅଣ ।

ବୋତଲ ପରେ ବୋତଲ ସରିଲା । ତା ପରେ ନଦୋହ୍ରା ନିଦ । ଆରାମ !

— ୧୩ —

ଠକ୍ ଠକ୍ ଶବ୍ଦରେ ସୁର ଉଠି ପଡ଼ି କହିଲା, 'କିଏ' ?
'ଭିତରକୁ ଯାଇ ପାରେ କି ?' ବାହାରୁ ପ୍ରଶ୍ନ ଆସିଲା ।
'ଅଲି ସାର' । ସୁର ଉତ୍ତର ଦେଲା ।
ସୁମନ୍ତ ହସି ହସି କହିଲା, 'ନମସ୍କାର' ।
ସୁର ଅଶ୍ଚର୍ଯ୍ୟ ହୋଇ କହିଲା, "ଆରେ ତୁମେ କୁଆଡ଼େ" ?
"ଏଇ ନାହିଁ ବୁଲି ଅସିଥିଲି ଟିକିଏ ।" ସୁମନ୍ତ କହିଲା ।
"ହଉ ବସ" ବୋଲି କହି ସୁର ଗୋଟିଏ ଚଉକି ବଢାଇ ଦେଲା ।

ସୁମନ୍ତ ଚଉକିଟାରେ ବସି ପଡ଼ି କହିଲା, "ଅଚ୍ଛା ସୁର ବାବୁ ଆପଣଙ୍କୁ ଗୋଟାଏ କଥା ପଚାରି ପାରେ କି ?"

ସୁର ମନୋଭାବ ଦମନ କରି କହିଲା, "ହଁ ନା ଆପଣରେ ପଚାରି ପାରନ୍ତି ।"

ସୁମନ୍ତ ଟିକିଏ ଗମ୍ଭୀର ହୋଇ କହିଲା, "ଅଚ୍ଛା ଆପଣ କହି ପାରିବେ ସେ ଧନ ଭଣ୍ଡାରାଗାରକୁ କିଏ ଯାଇଥିଲା ?"

ଏ ପ୍ରଶ୍ନ ପୁଣି ସୁର ଟିକିଏ ଇତସ୍ତତଃ ହୋଇଗଲା । କିନ୍ତୁ ସଙ୍ଗେ ସଙ୍ଗେ ନିଜକୁ ସମ୍ଭାଳି ନେଇ କହିଲା, "ମୁଁ ତ ଅଜ୍ଞ ବାଳକ ନୁହେଁ, ଜାଣିବ ବା କଅଣ ?"

"ତେବେ ଆପଣଙ୍କ ଅନୁମାନ ।"

ଅନୁମାନ ଉପରେ ତ ସବୁ ନିର୍ଭର କରିପାରେନା । ହୁଏତ ମୁଁ ଅନୁମାନ କରି କାହାକୁ ଜଣକୁ କହିଦେଇ ପାରେ । କିନ୍ତୁ ମିଛରେ ନଜାଣି ନ ଶୁଣି, ସ୍ୱଚକ୍ଷୁରେ ନ ଦେଖି ଅନୁମାନ କରି କହିବାଟା ମୋତେ ଭାହିଁକି ସପକ୍ଷ ଲାଗୁ ନାହିଁ ।

ସୁମନ୍ତର ଆଖି ଛଳ ଛଳ ହୋଇ ଉଠିଲା । ସେ କହିଲା, "ତୁମେ ବୋଧହୁଏ ଜାଣନା ସୁର ବାବୁ । ଜମିଦାର ଏଥିଲାଗି ମୋତେ କଣ କହିଛି । ମୋନନ୍ଦ ଯେଉଁ ଅପମାନ ଦେଇଛି, ତାହା ବୋଧହୁଏ ମୁଁ ଜୀବନରେ ଭୁଲି ପାରିବି ନାହିଁ । ମୁଁ କାହାରକୁ ଭୟ କରେ ନା, ଏପରିକି ମଧ୍ୟ ମୃତ୍ୟୁକୁ ସୁଦ୍ଧା ନୁହେଁ । ସାମାନ୍ୟ ଜମିଦାର କଥା ମୁଁ କଣ ଖାତିର କରିବି ? ସେ ମୋର ଆତ୍ମ ସମ୍ମାନରେ ବାଧା ଦେଇଛି । ମୁଁ ଏହାର ପ୍ରତିଶୋଧ ଦିନେ ନା ଦିନେ ନେବି । କିନ୍ତୁ ସୁର ବାବୁ ଆପଣ ମୋତେ ସାହାଯ୍ୟ କରିବେ ନାହିଁ ? ଅଧୀର ଭାବରେ ସୁମନ୍ତ ସୁରର ହାତ ଧରି ହଲାଇ ଦେଲା ।

ସୁର ରୁମାଲରେ ସୁମନ୍ତର ଲୁହ ପୋଛି ଦେଇ କହିଲା, "ଛି ସୁମନ୍ତ ଦେବୀ ! ତୁମେ ଶିକ୍ଷିତା । ଶିକ୍ଷାବଳରେ ତୁମେ ବଳୀୟାନ । ତୁମେ ଏପରି ଅଧୀର ହେଲେ ହେବ ? ତାହାଛଡ଼ା ତୁମେ ମୋତେ ସାହାଯ୍ୟ ମାଗୁଛ, ମୁଁ ବା ତୁମକୁ କପରି ସାହାଯ୍ୟ ଦେବି ।"

"ଓଃ, ତୁମେ ଜମିଦାରଙ୍କୁ ଭୟ କରୁଛ । ସେଟା ଛାଡ଼ଣି କଣ ? ସେ ତ ଯୋଗଟାଏ ମନୁଷ୍ୟ ନୁହେଁ—ଗୋଟାଏ ଟଙ୍କା ତାକୁ ଭୟ କରୁଛ ।" ତାଚ୍ଛଲ୍ୟ ସ୍ୱରରେ ସୁମନ୍ତ କହିଲା ।

ସୁର କହିଲା, "ନା, ନା ସୁମନ୍ତ ଦେବା । ତୁମେ ଏଥର ଅଧୀର ହୁଅନା । ମୁଁ ମଧ୍ୟ କାହାରିକୁ ଭୟ କରେ ନା । ସେ ଅନ୍ଧ ପଶୁ ହୋଇଛି, ଏବେ ସେ ପୁଣି ମନୁଷ୍ୟ ହୋଇପାରେ । ଅଚ୍ଛା, ଛାଡ ସେ ସବୁ କଥା । ଅନ୍ୟ ସମୟରେ କଥାବାର୍ତ୍ତା ହେବ ।"

ସୁମନ୍ତ ଦୁଃଖରେ କହିଲା, "ଆପଣଙ୍କର ଇଚ୍ଛା ।"

"ଏଟା କଣ ଆପଣଙ୍କ ଇଚ୍ଛା ନୁହେଁ ? ପରେ କଣ ଗୁଡ଼ାକ ଭାବି ମନରେ ଦୁଃଖ ଆଣିବାଟା କଣ ଭଲ ?"

ସୁମନ୍ତ ପ୍ରକୃତିସ୍ଥ ହୋଇ କହିଲା, "ହଉ ହେଲା ଏବେ ।" କିଛି ସମୟ ଚୁପ୍ ହୋଇ ବସି ସୁମନ୍ତ ପଚାରିଲା, "ଅଚ୍ଛା, ସହର ବୁଲିଲ ଯେ ମୋ ପାଇଁ କଣ ଆଣିଲ ?"

"ଆରେ ସତେ ତ । ମୁଁ ଭୁଲି ଯାଇଥିଲି" କହି ସୁର ଚମଡ଼ା ସୁଟକେଶ ଭିତରୁ ଗୋଟିଏ ସୁନାର ଚେନ କାଢ଼ି ସୁମନ୍ତ ଦେବୀଙ୍କୁ ଦେଖାଇଲା ।

"ଦେଖିଲ ଏଇଟା ତୁମ ପାଇଁ ଆଣିଛି । ପସନ୍ଦ ହେଉଛି ତ ?"

ସୁମନ୍ତ ହାରଟିକୁ ଦେଖି ସୁର ହାତକୁ ବଢ଼ାଇ ଦେଇ କହିଲା, "ବେଶ୍ ହୋଇଛି ।"

ସୁର ହସି ହସି କହିଲା, "ଆରେ ପିନ୍ଧ ନା"—ଫେରାଇ ଦେଉଛ କଣ ?

ସୁମନ୍ତ ତଳକୁ ମୁହଁ ପୋତି ଚୁପ୍ ବସିଲା ।

ସୁର କହିଲା, "ବସିଲ ଯେ, ଆରେ ଦେଖ ନା କପରି ଦିଶୁଛି ? ଅଚ୍ଛା, ମୁଁ ପିନ୍ଧାଇ ଦେଉଛି" କହି ଉଠିଯାଇ ପିନ୍ଧାଇ ଦେଲା ।

ସୁମନ୍ତର ଗୋଲାପି ଅଧରରେ ହାସ୍ୟ ରେଖା ଫୁଟି ଉଠିଲା ।

ସୁର କହିଲା, "ବେଶ୍ ତ । ବଡ଼ ଚମତ୍କାର ! ଆଇନାରେ ଦେଖ ନା କପରି ଦିଶୁଛି ।"

ସୁମନ୍ତ ଆରସିରେ ନିଜର ପ୍ରତିବିମ୍ବ ଦେଖି ଚମକି ପଡ଼ିଲା । ସତେ ସେ ଏତେ ସୁନ୍ଦରୀ । ସେ ସୁରକୁ କଣ କହିବ ତାର ପ୍ରତି-ଦାନରେ କଣ ଦେବ କିଛି ଠିକ୍ କରି ପାରିଲା ନାହିଁ । ଲଜ ଲଜ ହୋଇ କହିଲା, "ଆପଣଙ୍କୁ ଅଶେଷ ଧନ୍ୟବାଦ ସୁରବାବୁ ।"

କିଛି ସମୟ କଥାବାର୍ତ୍ତା ପରେ ସୁମନ୍ତ କହିଲା, "ମୁଁ ଯାଉଛି ସୁରବାବୁ ନମସ୍କାର । ସିଆଡ଼େ ଅନେକ କାମ ଅଛି ।"

ସୁର କହିଲା, "ପୁଣି କେବେ ?"

ସୁମନ୍ତ ହସି ହସି ଚାଲିଗଲା ।

—୧୪—

ସେ ଦିନ ରାତି । ଜଗତ ନିସ୍ତବ୍ଧ । ଦସ୍ୟୁମାନେ ସୁଖ ନିଦ୍ରାରେ ନିଦ୍ରିତ ।

ଏଇ ଠିକ୍ ସମୟ ସ୍ଥିର କରି ଉଠି କହିଲା, "ସୁରବାବୁ ସବୁ ଠିକ୍ ତ ? ଅଶୋକ ବାବୁ କୁଆଡ଼େ ଗଲେ ।"

ସୁର ଉତ୍ତର ଦେଲା, "ସବୁ ଠିକ୍ ଅଛି ।"

ରବି ହାତର ଟର୍ଚ୍ଚ ଜଳି ଉଠିଲା । ଅନ୍ଧକାର ମଧ୍ୟ ଯେଉଁଠି ଆଲୋକ ହୋଇ ଉଠିଲା, ସମସ୍ତେ ଆଗକୁ ଚାଲିଲେ । ବହୁ ପାଟକ ଅତିକ୍ରମ କରି ଆସିବା ପରେ ବନ୍ଦୀ କୁଟୀର ସମ୍ମୁଖରେ ପହଞ୍ଚିଲେ ।

କୁଟୀରର ନିକଟବର୍ତ୍ତୀ ହେଲାକ୍ଷଣି ପ୍ରହରୀ ପାଟି କରି ଉଠିଲା, "କିଏ ଜମିଦାର ସାହେବ ?"

ସମସ୍ତେ ଦେଖିଲେ ବର୍ତ୍ତମାନ ଖୁବ୍ ବିପଦ । କିଛି ଉପାୟ କରିବାକୁ ହେବ । ରବି ଟର୍ଚ୍ଚ ଲାଇଟ ଦେଇ ନରର ଜାନରେ କଣ କହିଲା. ତା ପରେ ଅନ୍ଧାର ମଧ୍ୟରେ ଭୂମି ଉପରେ ପଡ଼ିବାର ଗୋଟାଏ ଶବ୍ଦ ହେଲା ଏବଂ ଦୁଇ ଜଣଙ୍କ ମଧ୍ୟରେ ଧସ୍ତା ଧସ୍ତି ହେଉଥିବାର ଶୁଣାଗଲା ।

ରବି ମନକୁ ମନ ହସିବାକୁ ଲାଗିଲା, କିନ୍ତୁ ସମସ୍ତ ଘରେ ରବି ହାତ ଛଡ଼ି ଚାଲି ଉଠିଲେ, ପ୍ରହରଟି ଚେତା ଶୂନ୍ୟ ହୋଇ ତଳେ ପଡ଼ିଲା ।

ଶୀଘ୍ର ତାଲି ପିଟାଇ ସମସ୍ତେ ଭିତରକୁ ପଶିଲେ । ରେଖା, ଲତା ପ୍ରଭୃତି ଚମକି ପଡ଼ିଲେ । କଣ ପୁନର୍ବାର ଜମିଦାର ଆସିଲା, କିନ୍ତୁ ପଛକୁ ଚାହିଁଲେ । ଏକଣ ! ଆଜି ଏକଣ ଦେଖୁଛନ୍ତି ! ସମସ୍ତଙ୍କର ଭାଇ ଏବଂ ପିତା ସେମାନଙ୍କର ସମ୍ମୁଖରେ ।

ସମସ୍ତେ ନିଜ ନିଜର ପିତା ଏବଂ ଭାଇମାନଙ୍କୁ ଆନନ୍ଦରେ କୁଣ୍ଢାଇ ପକାଇଲେ ।

ଅଶୋକ ବାବୁ ଲତାର ମୁଣ୍ଡ ଆଉଁସି ଦେଇ ଦେଇ କହିଲେ, "ଏତେ ନିଷ୍ଠୁର ନା, ତୁ ! ବାପା ମାଙ୍କୁ ଛାଡ଼ି ଆସି ଏଠାରେ ବଡ଼ କଷ୍ଟରେ ଅଛୁ !"

ଲତା ଏହା ଶୁଣି କାନ୍ଦି ପକାଇଲା । କାନ୍ଦ କାନ୍ଦ ସ୍ୱରରେ ଡାକିଲା "ବାପା, ମୁଁ ଭୁଲ କରି ନାହିଁ । ମୁଁ ଜାଣି ଜାଣି ତୁମକୁ ଛାଡ଼ି ଆସି ନାହିଁ । ମୁଁ ନିର୍ଦ୍ଦୋଷ । ବଦମାସ୍ ଜମିଦାର ମତେ ଆଣି ରଖିଛି । ଏବେ ମତେ ନୁହେଁ ଏ ଦୁହିଁଙ୍କୁ ମଧ୍ୟ" କହି ଲତା, ରେଖା ଏବଂ ଆଶାଙ୍କ ଆଡ଼କୁ ହାତ ବଢ଼ାଇଲା ।

ଅଶୋକ ବାବୁ ଆଉ ସମ୍ଭାଳି ପାରିଲେ ନାହିଁ । ପ୍ରାଣର କନ୍ୟାକୁ ଆନନ୍ଦରେ କୁଣ୍ଢାଇ ଧରିଲେ ଏବଂ ପିଲାଙ୍କ ପରି କାନ୍ଦି ଉଠିଲେ ।

କି ସୁନ୍ଦର ଏ ମିଳନ । ଚମତ୍କାର ! ଏପରି ମିଳନ ସିନା ଜଗତରେ ଶୋଭାପାଏ । ବିଚ୍ଛେଦ ନ ଥିଲେ ମିଳନର ସୌନ୍ଦର୍ଯ୍ୟ ଆସିବ କୁଆଡ଼ୁ ।

ଏହିପରି କିଛି ବେଳ କଟିଗଲା ।

ନର କହିଲା, "ଆଉ ଡେରି କଲେ ଚଳିବ ନାହିଁ । ଏଥର ଚାଲନ୍ତୁ ଯିବା ।"

ସମସ୍ତେ ହଁ ଭରିଲେ ।

ସୁର କହିଲା, "ଆଉ ଭୟ କର ନା ତୁମେମାନେ । କାଲି ପର୍ଯ୍ୟନ୍ତ ଏହିଠାରେ ବନ୍ଦୀ ଭାବରେ ଥାଅ । କାଲି ତୁମମାନଙ୍କର ମୁକ୍ତିର ଦିନ, ସବୁ ଠିକ୍ ହୋଇଯିବ । ଭାବନା କର ନାହିଁ । ହସ ଥାଅ । ଆମେ ଯାଉଛୁ ।"

ସମସ୍ତେ ଚାଲିଗଲେ, କବାଟ ବାହାର ପଟରୁ ବନ୍ଦ ହେବାର ଶବ୍ଦ ଶୁଣାଗଲା ।

ତିନି ଭଉଣୀ ଅଦ୍ଭୁତ ମନରେ ବିଛଣାରେ ପଡ଼ିଗଲେ ।

ପ୍ରହର ଉଠିବା ପୂର୍ବରୁ ସମସ୍ତେ ପହଞ୍ଚାଇ ଆସିଲେ ।

ତା ପର ଦିନ । ପୂର୍ବ ସକାଳୁ ଗୋଟାଏ ବଡ଼ ଘଣ୍ଟା ବାଜି ଉଠିଲା ଢଂ, ଢଂ । ସମସ୍ତେ ଆସି ଜମିଦାରଙ୍କ ପାଖେ ଜୁଣ୍ଡ ହେଲେ ।

ଜମିଦାର ମଝିରେ ଠିଆ ହୋଇ କହିଲେ, "ଦେଖ, ଆଜି ଦୁଗାର ଦିନ । ସମସ୍ତେ ଯେତେ ପାରୁଛ ସେତେ ଆନନ୍ଦ କର । ଆଜି ସମସ୍ତଙ୍କ ପାଇଁ ଦ୍ୱାର ଖୋଲା । ସନ୍ଧ୍ୟା ନ'ଟା ବେଳକୁ ମୁଁ ପୂଜା କରିବି, ବାରଟା ବେଳକୁ ପୂଜା ସାରିବି ଏବଂ ତା ପରେ ବଳିଦିଆ ଯିବ, ତିନି କନ୍ୟା । ତୁମେମାନେ ଯାଅ ଆନନ୍ଦ କର ।" ଏତିକି କହି ଜମିଦାର ଚାଲିଗଲେ ।

ସମସ୍ତେ ଜୟ ଜୟ ନାଦ କରି ଫେରି ଆସିଲେ । କିନ୍ତୁ ଜମିଦାର ମନରେ ଆନନ୍ଦ ନାହିଁ । ସନ୍ଦେହର ଛାୟା ମନରେ ଘନୀଭୂତ ହୋଇ ଉଠୁଛି । ତାର ଅନୁଚର ଯେପରି କେହି ନାହାନ୍ତି, ସମସ୍ତେ ପର, ଏହିପରି ଲାଗୁଛି ।

ଏ ଭୀଷଣ ସେ ଯୁଦ୍ଧ । ଗୁଞ୍ଜି ହେଉ ନାହିଁ । ଲୁଚିଛି ପାଗଳ ହାତୀ, ଦେହରୁ ଝାଳ ବହୁ ଚମ୍ ଭୁଝନ୍ତି । ଏକାଦଶ, ଏକାଡଣ୍ଡ ! ଏକଣ ? ସମସ୍ତେ ଅସ୍ଥିର ।

ଜମିଦାର ଭାବୁଛି, 'ଜୀବନ ଯେପରି ଉଠୁଛି, ତାର ମୃତ୍ୟୁ ଅନିବାର୍ଯ୍ୟ । ସେ ଆଉ ବଞ୍ଚିବ ନାହିଁ । ଜୀବନ ନିଶ୍ଚୟ ତାକୁ ହତ୍ୟା କରିବ ।"

ଜୀବନ ଭାବୁଛି, "ଜମିଦାର ବୃଦ୍ଧ, ... ସଂଗ୍ରାମରେ ଏତେ ବେଳଯାଏ ଠିଆ ହୋଇ ପାରୁଛି ... ଭାବି ପାରୁ ନାହିଁ । ଅସ୍ଥିର ଲାଗୁଛି ତାକୁ ।

ଘଣ୍ଟା ଘଣ୍ଟା ଧରି ଯୁଦ୍ଧ ଚାଲିଛି । ଦୁଇ ଘଣ୍ଟା ବିତି ଗଲାଣି । ଜମିଦାରର ହାତ ଅବଶ ହୋଇ ଆସିଲା । ଏତିକିବେଳେ ଜୀବନର ଖଣ୍ଡାଟି ଜମିଦାରର ବକ୍ଷ ଆଘାତ କଲା । ଜମିଦାର ଆହତ ହୋଇ ତଳେ ପଡ଼ିଗଲା ।

ତଥାପି ଜୀବନର କ୍ରୋଧ ତୁଟିଲା ନାହିଁ । ସେ ତାକୁ ଶୂଳୀ ଉପରକୁ ଟେକି ନେଲା । ପ୍ରଥମ ଶୂଳୀ ଉପର । ଜୀବନ ଘଣ୍ଟକୁ ନବଲୁ ମଠା- ଭଲ କଲ ଫୋଡ଼ିବାକୁ ।

ଜମିଦାରର ମୋହ ଭାଙ୍ଗିଗଲା । ନିରାଶ୍ରୟ ସେ । ଆଉ କିଛି ପାରିଲା ନାହିଁ । ଶୂଳୀ ଉପରେ ଶୋଇଛି । ସେପଣେ ଲାଗି ଦେବାକୁ କ୍ରୁର ଗୁଣ୍ଡାଳ ଧୀରେ ଧୀରେ ଆସି ଅଛନ୍ତି ଜମିଦାରକୁ ତୃପ୍ତି ଦେବାକୁ, ଉପର ପାରକୁ ନେଇଯିବ ବୋଲି ।

ଜମିଦାର ଚିତ୍କାର କରି ଉଠିଲେ । ଅଶୋକ ବାବୁ କ୍ଷମାକର ! ଜୀବନରେ ମୁଁ ବଡ଼ ଭୁଲ କରିଛି, କ୍ଷମା କର । ତୁମର ସ୍ନେହର କନ୍ୟାକୁ ଫେରାଇ ଦେଉଛି । ମୋତେ କ୍ଷମାଦିଅ । କିନ୍ତୁ ଅଶୋକ-ବାବୁ ଶୁଣିଲେ ନାହିଁ ।

ତା ପରେ ଜମିଦାର ଜୀବନଙ୍କୁ ମିନତି କରି କହିଲ, "ଜୀବନ ମୁଁ ବଡ଼ ଭୁଲ କରିଛି । ତୋର ପିତା, ମାତାକୁ ମୁଁ ହତ୍ୟା କରିଛି । ମୁଁ ବଡ଼ ପାପୀ । ମୋତେ କ୍ଷମା କର ।" ଜୀବନ ମଧ୍ୟ କିଛି ଶୁଣିଲ ନାହିଁ ।

ଅଠ ହାତେ ଅଛି ଛୁରୀମାନ ଗଳିବାକୁ ଜମିଦାରଙ୍କ ଦେହରେ ।

ଜମିଦାର କହି ଉଠିଲେ, "ରଣ, ମୁଁ ବଡ଼ ଭୁଲ କରିଛି । କହିଲି ଭଲ କେବେ ତୁମକୁ ମୁଁ ୪୦ ଖସ୍ପରେ ରଖିଛି । ତୁମର ମାତାଙ୍କୁ ମୁଁ ହତ୍ୟା କରିଛି । କିନ୍ତୁ ସତେ କଣ ତୁମେ ମତେ କ୍ଷମା କରିବ ନାହିଁ । କ୍ଷମା କର । ନୋହିଲେ ମୁଁ ମଲି । ତୁ କି ଶୁଣିଲୁ ନାହିଁ । ହେଇ, ମୋର ଭାଗ୍ୟ । ରେଖା, ତୁ କଣ ଏ ମୃତ୍ୟୁ ଅଧିରେ ଦେଖିବୁ, ତୋ କଣ୍ଠରେ ଦୟା ପଶୁନାହିଁ । ତତେ କଣ ଶୁଝୁ ନାହିଁ । ମୋତେ କ୍ଷମା କର । ମୁଁ ଅଉ ଧନେ ତୋର ଅନିଷ୍ଟ କରିବି ନାହିଁ । ମତେ କ୍ଷମା ଦେ ।"

ରେଖା କିଛି କହି ପାରିଲା ନାହିଁ । ନିସ୍ତବ୍ଧ ହୋଇ ଠିଆ ହୋଇ ରହିଲା ।

ଜମିଦାର ଆଶା ନ ଦେଖି ଲତାକୁ କହିଲେ "ଲତା, ତୋ ବାପାଙ୍କ ଫେରି ପାଇଲୁ, ତୋର ମାଆ ପାଖକୁ ଫେରିଯିବୁ । ସତେ

କଣ ଏ ବୃଦ୍ଧକୁ ଏ ଶଳୀରେ ମାର ଦେଉଥିବୁ, ତୋର କଣ ଦୟା ହେଉନାହିଁ । ହଉ ତୋର ଇଚ୍ଛା ।"

ଅଳ୍ପ ଅଳ୍ପ ସମୟ । ପାଞ୍ଚ ମିନଟ୍ ମଧ୍ୟରେ ସବୁ ଶେଷ ହୋଇ-ଯିବ । ଜମିଦାର ଶେଷମୁହୂର୍ତ୍ତ ପାଇଁ ଅଣାକୁ କ୍ଷମା ମାଗିଲା । "ଅଣା, ତୋର ବାପା ନାହାନ୍ତି, ମାଆ ନାହାନ୍ତି । ମନେ କର ମୁଁ ତୋର ବାପା । ବାପାକୁ କଣ ମାରିବାକୁ କିପରି ହାତ ଯାଏ, ଝଟେବ କୁହେ । ମୁଁ ଯଦି ତୋର ପ୍ରକୃତରେ ବାପା ହୋଇଥାନ୍ତି, ତେବେ କଣ ମୋତେ ଏପରି ଅବସ୍ଥାରେ ଦେଖି ସହି ପାରନ୍ତୁ । ତୋର ଏ ଅଧମ ପିତାକୁ କ୍ଷମା କର । ଥରେ ଡାକ ପିତା ବୋଲି । ମରଣ ପୂର୍ବରୁ ସେ ଡାକ ଥରେ ଶୁଣେ । ବ ଶାନ୍ତିରେ ମରିବି । କାହାରିକୁ କିଛି କହିବି ନାହିଁ । କ୍ଷମା କର, ସମସ୍ତେ ରକ୍ଷା କର ।"

ଅଶୀଷ ସ୍ୱରରେ ଅଣା ପାଟିରୁ ବାହାରି ପଡ଼ିଲା "ବାପା" ।

ରବି ପାଟି କରି ଉଠିଲା, "ଅଣା କଣ କହିଲୁ ।" ଅଣା ଗମ୍ଭୀର ସ୍ୱରରେ କହିଲା, "ମୁଁ କେବେ କାହାରିକୁ ଅଭିଶାପ କରି ନାହିଁ । ତାଙ୍କର ପ୍ରାୟଶ୍ଚିତ୍ତ ପୂରା ହୋଇଛି । କ୍ଷମା କର ଭାଇ, କ୍ଷମା ଦିଅ ସମସ୍ତେ ।"

ଜୀବନ କିଛି କହି ପାରିଲା ନାହିଁ । ତା ପାଟିରୁ ବାହାରିଲା "ବନ୍ଧକର ।"

ଜମିଦାର ବାହାରି ଆସିଲେ । ମରଣ ମୁଖରୁ ବଞ୍ଚି ଯାଇଛନ୍ତି । ଅଣା ଏବଂ ରବିକୁ କୁଣ୍ଢାଇ ପକାଇଲେ ।

ଏ ସୁନ୍ଦର ମିଳନ । ପୃଥିବୀରେ ଏ ମିଳନ ବିରଳ ।

ରବି କହିଲା, "ମୋତେ କ୍ଷମା କର ବାବା" ।

ଜମିଦାର ତୁହିଙ୍କୁ ନିଜର ତାଙ୍କୁ ଉଟରକୁ ଉଠ ଅଣିଲେ ଏବଂ ଜୀବନର ସହିତ ଅଶାକୁ ମିଳାଇ ଦେଲେ । ଜୀବନର ପିତା ମରିବା ପୂର୍ବରୁ ରେଖାକୁ ନବ ହାତରେ ସମର୍ପି ଦେଇଥିଲେ । ଜୀବନ ତା ଅଙ୍ଗୀକାର ଭୁଲନ୍ତା କିପରି ? ତା ମଧ୍ୟ ପୂରଣ ହୋଇଗଲା ।

ଅଶୋକ ବାବୁ ରବି ଏବଂ ଲତାକୁ ନେଇ ତାଙ୍କ ଘରକୁ ଚାଲିଗଲେ ।

ଜମିଦାର, ଜୀବନ, ନବ, ରେଖା ଏବଂ ଅଶାକୁ ନେଇ ସୁନ୍ଦର ମଫସଲକୁ ଫେରି ଆସିଲେ । ଜମିଦାରଙ୍କ ସ୍ତ୍ରୀ ଗୃହେ ବସି ଥିଲେ । ଗ୍ରାମରେ ସମସ୍ତେ ଏମାନଙ୍କୁ ପାଇ ଆନନ୍ଦ ସାଗରରେ ଭାସିଗଲେ । ସମସ୍ତେ ଆନନ୍ଦରେ ଅଧୀର । ଏ ମଧୁର ମିଳନ ରେ କିଏ ବା ଆନନ୍ଦ ନ ହେବ ।



ମୁଦ୍ରାକର-ଶ୍ରୀ ବନମାଳୀ ମିଶ୍ର_ନବଭାରତ ପ୍ରେସ, କଟକ, ୧୯୫୦-୧୦୦୦

